# କଥା ଏକ ନଦୀ

ସମ୍ପାଦନା

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର



[illegible]

ପ୍ରକାଶକ

**ଶ୍ରୀ ଅନନ୍ତ ମିଶ୍ର**

କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର

ବାଲୁବଜାର : କଟକ-୨

ନୂତନ ସଂସ୍କରଣ

୧୯୭୬

ମୁଦ୍ରାକର

ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରସାଦ ପ୍ରେସ : କଟକ-୨

ମୂଲ୍ୟ—ଟ ୫·୦୦

**Dr. Krushna Prasad Mishra**

# *Katha Eka Nadee*

**(Short Story Collection)**

Publisher

**Anant Misra**

Cuttack Students' Store

Cuttack-2

Reprint

1976

Printer

Prasad Press

Cuttack : 2

Price Rs. 5-00

*[ Paper used for the printing of this book was made available by the Government of India at Concessional rates." ]*

# ଭୂମିକା

କଥା ଏକ ନଦୀ, ଓଡ଼ିଆ କଥା ସାହିତ୍ୟ ମଧ୍ୟ ଏକ ନଦୀ । ପଣ୍ଡିତ ଓ ରସିକ ଲୋକମାନେ, କେଉଁ ସମୁଦ୍ରର ଜଳକଣା ଆକାଶକୁ ପ୍ରଥମେ ଯାଇ ମେଘ ସୃଷ୍ଟି ହେଲା, କେଉଁ ମୌସୁମୀ ବାୟୁର ଘାତ ପ୍ରତିଘାତରେ ମେଘ କେଉଁ ଭୂଖଣ୍ଡ ଆଡ଼କୁ ଯାଇ ବର୍ଷା ହେଲା, ଏବଂ ପର୍ବତ ଓ ଉଚ୍ଚଜାଗାରେ ବର୍ଷା ପରେ କିପରି ନଦୀର ସୃଷ୍ଟି ହେଲା, ସେହି ବିଷୟ ଆଲୋଚନା କରିଛନ୍ତି । ଏପରି ଗୋଟିଏ ନଦୀ ନୁହେଁ, ସବୁ ଦେଶରେ, ଏକ ଚିରନ୍ତାନିକ ନିୟମ ଯୋଗୁ ଯେପରି, ବହୁ ନଦୀ ସୃଷ୍ଟି ହୋଇଛି; ସେହି ନଦୀଗୁଡ଼ିକ, କେଉଁ ପ୍ରାଚୀନକାଳରୁ, ନିଜ କୂଳରେ ସଭ୍ୟତାମାନ ସୃଷ୍ଟି କରି କରି, ସହର ଓ ଜନପଦର ଉତ୍ଥାନ ପତନ ଦେଖି ଦେଖି, ନୂଆ ଜଳ ପ୍ରବାହମାନଙ୍କ-ଦ୍ୱାରା ପୁଷ୍ଟ ହୋଇ, ସମୟ ସମୟରେ କୂଳ ଲଂଘି, କୂଳର ଜମିକୁ ଉର୍ବର କରି, ଅନନ୍ତ ମହାସାଗର ଆଡ଼କୁ ବହି ଚାଲିଛନ୍ତି ।

ଓଡ଼ିଆରେ ଫକୀର ମୋହନ ସେନାପତିଙ୍କୁ ଗଳ୍ପର ଜନକ, ନଦୀ ସ୍ରୋତ ବହିବା ପୂର୍ବର ଶକ୍ତିଶାଳୀ ପ୍ରପାତ ରୂପେ, ନିଆଯାଏ । ଏହାଙ୍କ ପୂର୍ବରୁ, ଗଳ୍ପର ମୂଳ ଆଲୋଚନା କରିବାକୁ ହେଲେ, ମେଘ, ଜଳବିନ୍ଦୁ-

ମାନଙ୍କ ଆଡ଼କୁ ଯିବାକୁ ହେବ—ତଅପୋଇ ଗପ, ସୋମନାଥ ବ୍ରତ କଥା, କଲରେଇ ବେଣ୍ଟ କଥା ସବୁକୁ ଆଲୋଚନା କରିବାକୁ ହେବ । ଆହୁରି ପ୍ରାଚୀନ କାଳକୁ ଗଲେ, ବେଦର ସଂହିତା, ଆରଣ୍ୟକ ଓ ଉପନିଷଦ ଖଣ୍ଡମାନଙ୍କରେ ଥିବା ପ୍ରତୀକ ଓ ରୂପକଧର୍ମୀ ଗପ ଆଖି ଆଗକୁ ଆସିବ । ଏହିପରି ଭାବେ ଆଗକାଳର କଥା, କାହାଣୀ, ଆଖ୍ୟାୟିକାଗୁଡ଼ିକ ସହ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ ସମ୍ପୃକ୍ତ ।

ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ ବିଷୟ ଓ ଶୈଳୀ ଦୃଷ୍ଟିରୁ ପ୍ରାଚୀନ କଥାଠୁ ବହୁଦୂର ଅଗ୍ରସର କରି ସାରିଲାଣି । ନଦୀଜଳର ରଙ୍ଗରେ ପରିବର୍ତ୍ତନ ଆସିଛି, ନୂଆ ନୂଆ ସହରର ଛାୟା ନଦୀ ବକ୍ଷରେ ପଡ଼ୁଛି, କୂଳେ କୂଳେ ପ୍ରସ୍ତର ବନ୍ଧ ଦିଆଯାଇ ନଦୀ ପାର୍ଶ୍ୱର ସୀମା ମଧ୍ୟ ଠିକ୍ କରି ଦେବାପାଇଁ ଚେଷ୍ଟା କରାଯାଉଛି । କଥା ପ୍ରବନ୍ଧଠୁ ଭିନ୍ନ ହୋଇଛି, ରମ୍ୟ ରଚନାଠୁ ସ୍ୱତନ୍ତ୍ର ହୋଇଛି ।

ସାହିତ୍ୟରେ କ୍ଷୁଦ୍ର ଗଳ୍ପ ଏକକ ପ୍ରଭାବ ବିଶିଷ୍ଟ ଲେଖା । ଏହା କ୍ଷୁଦ୍ର—କେତେକଙ୍କ ମତରେ ଦଶହଜାର ବା ତାଠୁ କମ୍ ଶବ୍ଦ ସମ୍ବଳିତ—ମାର୍ମିକତା, ଆକାର ପ୍ରଧାନତା, ଏକାଗ୍ରତା, ଏହାର ଅନ୍ୟାନ୍ୟ କେତୋଟି ଗୁଣ । କେତେବେଳେ ଚରିତ୍ରାନୁଶୀଳନ, କେତେବେଳେ ପୃଷ୍ଠଭୂମିର ବୈଚିତ୍ର୍ୟ ବର୍ଣ୍ଣନା, କେତେବେଳେ ମନସ୍ତାତ୍ତ୍ୱିକ ଗଭୀରତାକୁ ଯିବାପାଇଁ ଏହାର ଚେଷ୍ଟା । ସେଥିପାଇଁ ଜୀବନର, ଆତ୍ମର ବସ୍ତୁରର, ଜାତୀୟ ଚରିତ୍ରର, ନୈତିକତାର, ଆଶା ଅଭିଳାଷର କଥା, କ୍ଷୁଦ୍ରଗଳ୍ପ ପ୍ରକାଶ କରେ । ସେ ସବୁକୁ ଜାଣିବାପାଇଁ କ୍ଷୁଦ୍ରଗଳ୍ପ ମୂଲ୍ୟବାନ ମାଧ୍ୟମ । ଶ୍ରେଷ୍ଠ କ୍ଷୁଦ୍ରଗଳ୍ପଗୁଡ଼ିକରେ ନୈତିକ ଆନ୍ତରିକତା ଓ ତତ୍ତ୍ୱାତ୍ମକ ଗଭୀରତା ରହିବା ବାଞ୍ଛନୀୟ । ଆରମ୍ଭରେ କ୍ଷୁଦ୍ରଗଳ୍ପ ଗୋଟିଏ ଆଗ୍ରହ ସୃଷ୍ଟି କରି ପାରୁଥିବା ବିଷୟର ଅବତାରଣା କରି, ଜଟିଳତାର କ୍ରମଶଃ ନିରାକରଣ

ଫକୀର ମୋହନ ସେନାପତି

# ରେବତୀ

କଟକ ଜିଲ୍ଲାର ହରିହରପୁର ପ୍ରଗନା ମଧ୍ୟରେ ଗୋଟିଏ ମଫସଲ ଗ୍ରାମ, ନା ପାଟପୁର । ଗ୍ରାମ ମୁଣ୍ଡାମୁଣ୍ଡିରେ ଗୋଟିଏ ଘର । ଆଗିଲା ପିଛିଲା ଚାରିବଖରା, ଖଞ୍ଜା ପାଚେରି ଚାଳିଆରେ ଟିର୍କି ଶାଳ, ଅଗଣା ମଧ୍ୟରେ କୂଅ, ଆଗକୁ ଦାଣ୍ଡଦୁଆର, ପଛକୁ ବାଡ଼ି ଦୁଆର । ଦାଣ୍ଡ ଦୁଆର ମେଲାଘରେ ଦାଣ୍ଡଲୋକେ ବସା ଉଠା କରନ୍ତି, ପ୍ରଜାମାନେ ଖଜଣା ଦେବାକୁ ଆସି ଏହିଠାରେ ବସନ୍ତି । ଶ୍ୟାମବନ୍ଧୁ ମହାନ୍ତି ଜମିଦାର ତରଫରୁ ଗ୍ରାମର କରଣ, ମାସକୁ ଦରମା ଦୁଇଟଙ୍କା, ଦରମା ଛଡ଼ା ପାଉଣ୍ଟି ବିଶୋଧନୀ, ବାହାଲହଣା ଇତ୍ୟାଦିରୁ ଦୁଇ ପଇସା ହାତପେଠ ହୁଏ । ସବୁ ମିଶାଇଲେ ମାସକୁ ଚାରିଟଙ୍କାରୁ ଊଣା ହେବନାହିଁ, ସଂସାର ଏକରକମ ଚଳେ । ଏକରକମ କଅଁ ? ବୋଇଲେ ଭଲ ଚଳେ । ଏଇଟା ହେଲାନାହିଁ, ସେଇଟା ଘରେ ନାହିଁ, ଏପରି କଥା ଘରର କାହାରି ମୁହଁରୁ ଶୁଣାଯାଏ ନାହିଁ । ବାଡ଼ିରେ ଶାଗମାଗ ଛଡ଼ା ସଜନା ଦୁଇଗଛ । ଘରେ ଲଗାପଡ଼ିଆ, ବରଷ ବିଆଣୀ ଗାଈ ଦୁଇଟା ବନ୍ଧା; ଦୁଧ ଟିକିଏ, ଚହ୍ଲା ମନ୍ଦାଏ ହାଣ୍ଡି ତଳେ ଲଗିଥାଏ । ବୁଢ଼ୀ ଚଷୁ ମିଶାଇ ଦହି ପାଡ଼ିଦିଏ, କାଠ କଣା ବାଧେନାହିଁ । ଜମିଦାର ସାଢ଼େ ତିନ ମାଣ ଜମି ଚଷିବାକୁ

ଦେଉଛନ୍ତି, ଧାନ ବଳେନାହିଁ, ବ କମେ ନାହିଁ । ଶ୍ୟାମ ବନ୍ଧୁ ଟି ବଡ଼ ସିଧା ସଳଖ ଲୋକ, ପ୍ରଜାମାନେ ମାନନ୍ତି, ସୁଖ ପାନ୍ତି । ବାପରେ ଧନରେ କହ୍ନ ଦୁଆର ଦୁଆର ବୁଲି ଖଜଣା ଅସୁଲ କରେ, କାହାରିଠାରୁ ଅନ୍ୟାୟରେ ପଇସାଟିଏ ନିଏ ନାହିଁ । ପ୍ରଜାମାନେ ଖଜଣା ଦେଇ, ପାଉତି ମାଗନ୍ତି ନାହିଁ, ସେ ଘରଆଙ୍କ ତାଳପତ୍ରରେ ଖଣ୍ଡେ ପାଉତି ଲେଖି ବଳେ ଘରଚାଳରେ ଗୁଞ୍ଜି ଦେଇଯାଏ । ଜମିଦାର ପିଆଦା ଆସିଲେ ଗାଁକୁ ଘୁଡ଼େନାହିଁ, ଆପେ ହାତ ଓଠ ଧରି ଧୂଆଁ ଖିଆ ଦୁଇପଇସା ଅଣ୍ଟାରେ ଗୁଞ୍ଜି ଦେଇ ବିଦାକରେ । ଶ୍ୟାମବନ୍ଧୁ ଘରେ ଖାଇବାକୁ କୁଟୁମ୍ବ ଚାରିଜଣ, ଆପେ ଦୁଇ ପରାଣୀ, ମା ବୁଢ଼ୀ, ଦଶ ବରଷର ଗୋଟିଏ ଝିଅ । ଝିଅର ନାମ ରେବତୀ । ଶ୍ୟାମବନ୍ଧୁ ସଞ୍ଜବେଳେ ପିଣ୍ଡାରେ ବସି "କୃପାସିନ୍ଧୁ ବଦନ" ଗାଏ, ଆଉ ଭଜନ ଗାଏ, କେବେ କେବେ କାଠ ରୁଖାଟି ଉପରେ ବଇଠାଟିଏ ଥୋଇ ଭାଗବତ ପଢ଼େ, ରେବତୀ ପାଖରେ ବସି ଶୁଣୁଥାଏ । ସେ ମୁହେଁ ମୁହେଁ ଢେର ଭଜନ ଶିଖିଗଲାଣି, ତା ପିଲାମୁହଁକୁ ଭଜନଗୁଡ଼ିକ ଖୁବ୍ ମାନେ । ସଞ୍ଜବେଳେ ବାପା ପାଖରେ ବସି ଭଜନ ଗାଇଲେ ଗାଁର କୌଣସି କୌଣସି ଲୋକ ଆସି ଶୁଣନ୍ତି । ରେବତୀ ବାପା ପାଖରୁ ଗୋଟିଏ ଭଜନ ଶିଖିଥିଲା, ସେଇଟି ଗାଇଲେ ଶ୍ୟାମବନ୍ଧୁ ବଡ଼ ଖୁସୀହୁଏ । ପ୍ରତିଦିନ ଝିଅକୁ ଗାଇବାକୁ କହେ, ରେବତୀ ଗାଏ—

'କା' ଆଗେ କରିବି ଗୁହାରି ?
ତୁମ୍ଭେ ନ ଚାହିଁଲେ ନାଥ ଗରିବ ଯିବ ସରି ।
କର ବା ନ କର ତ୍ରାଣ, ପଦେ ସମର୍ପିଛୁ ପ୍ରାଣ
ହୃଦେ ଅଛୁ ତବ ନାମ ଧରି ।
ତୁମ୍ଭ ବିନା ହି ଜଗତ ଶୂନ୍ୟ ହେ ହରି !
ଶୀତଳ କର ଜୀବନ ପ୍ରେମାମୃତ ଦାନ କରି ।'

ଦୁଇ ବରଷ ତଳେ ସ୍କୁଲ ଡେ. ଇନ୍‌ସପେକ୍ଟର ମଫସଲ ଗସ୍ତକୁ ଯିବା ସମୟରେ ପାଟପୁରରେ ରାତିଏ ରହି ଯାଇଥିଲେ । ଗ୍ରାମର ମୁଖିଆ ମୁଖିଆ କେତେଜଣ ଲୋକ କୁହାପୋଛା କରିବାରୁ ଦପୋଟିବାକୁ ଓଡ଼ିଶା ବିଭାଗର ଇନ୍‌ସପେକ୍ଟରଙ୍କଠାରୁ ରିପୋର୍ଟ କରି ଗୋଟିଏ ଅପରପ୍ରାଇମେରୀ ସ୍କୁଲ ବସାଇ ଦେଇଅଛନ୍ତି । ଶିକ୍ଷକ ବେତନ ମାସକୁ ଚାରିଟଙ୍କା । ଏହି ଚାରିଟଙ୍କା ସରକାରରୁ ମିଳେ । ଏହାଛଡା ପ୍ରତି ପିଲା ମାସକୁ ଅଣାଏ ଲେଖାଏଁ ଦିଅନ୍ତି । ଶିକ୍ଷକଟି କଟକ ନର୍ମାଲ ସ୍କୁଲର ଅବଧାନ ବିଭାଗର ଉତ୍ତୀର୍ଣ୍ଣ ଛାତ୍ର, ନାମ ବାସୁଦେବ । ନାମଟି ଯେପରି ବାସୁଦେବ, ଲୋକଟା ମଧ୍ୟ ସେହିପରି ବାସୁଦେବ । ଚୋକାଠାର ଭିତର ବାହାର ସବୁ ସୁନ୍ଦର । ଗାଁ ମଝିରେ ଚାଲିଯିବାବେଳେ ମୁଣ୍ଡଟେକି କାହାକୁ ଚାହେଁନାହିଁ । ବୟସ ଅନ୍ଦାଜ କୋଡ଼ିଏ । ସୁନ୍ଦର ରୂପ, ଯେମନ୍ତ ଗୋଟିଏ ଚାଉଳରେ ଗଢ଼ା । ପିଲାଦିନେ ପିତ୍ତଳାରୋଗ ହୋଇଥିଲା । ତା ମା ମୁଣ୍ଡରେ ତତଲା ବୋତଲ ମୁହଁ ଚିହ୍ନ ଦେଇଥିଲା । ସେ ଚିହ୍ନ ଆଜଯାଏ ଅଛି । ହେଲେ, ସେ ଚିହ୍ନ ତାକୁ ମାନେ । ବାସୁଦେବ ପିଲାକାଳରୁ ମା ବାପ ଛେଉଣ୍ଡ, ମାମୁଁଘରେ ରହି ମଣିଷ ହୋଇଛି । ବାସୁଦେବ ଜାତିରେ କରଣ, ଶ୍ୟାମବନ୍ଧୁ ମଧ୍ୟ କରଣ । ତେବେ ପୁନେଇ ଗୁରୁବାରରେ ଘରେ ପିଠାପଣା ହେଲେ ଶ୍ୟାମବନ୍ଧୁ ପାଠଶାଳାକୁ ଯାଇ କହିଆସେ, "ବାପା ବାସୁ ! ସଞ୍ଜବେଳେ ଟିକିଏ ଆମ ଘରକୁ ଯିବ, ତୁମ ମାଉସୀ ଡାକୁଛନ୍ତି ।" ଏହିପରି ଯିବା ଆସିବାରେ ସେମାନଙ୍କ ମଧ୍ୟରେ ଗୋଟାଏ ମାୟା ଲାଗିଗଲାଣି । ରେବତୀ ବାସୁକୁ ଦେଖିଲେ କହେ, "ଆହା ମା ଛେଉଣ୍ଡଟି, କଣ ଖାଏ, କିଏ ତା ଖାଇବା ଦେଖୁଛି ।" ବାସୁ ପ୍ରତିଦିନ ସଞ୍ଜବେଳେ ଯାଇ ଶ୍ୟାମବନ୍ଧୁ ପାଖରେ ଘଡ଼ିଏ ଅଧେ ବସି ଆସେ । ବାସୁକୁ ଦୂରରୁ ଦେଖିଲେ "ବାସୁଭାଇ ଅଇଲେ, ବାସୁଭାଇ ଅଇଲେ" ବୋଲି ରେବତୀ ପାଟି କରି ବାପକୁ କହେ । ରେବତୀ ସଞ୍ଜବେଳେ ବାପ ପାଖରେ ବସି ପ୍ରତିଦିନ ପଠିତ ପୁରୁଣା ଭଜନଗୁଡ଼ିକ

ବାସୁକୁ ଶୁଣାଏ । ବାସୁକୁ ସେହି ଗୀତ ନୂଆ ନୂଆ ପରି ଲାଗେ । ଦିନେ ଏ କଥା ସେ କଥା ପଡ଼ୁ ପଡ଼ୁ ଶ୍ୟାମବନ୍ଧୁ ଶୁଣିଲେ, କଟକରେ ଗୋଟିଏ ଝିଅସ୍କୁଲ ଅଛି, ସେଠାରେ ଝିଅମାନେ ପଢ଼ନ୍ତି, ଲୁଗାସିଆଁ ଶିଖନ୍ତି । ସେହି ଦିନଠାରୁ ରେବତୀକୁ ପଢ଼ାଇବାକୁ ଶ୍ୟାମବନ୍ଧୁଙ୍କର ମନେହେଲା ଏବଂ ଆପଣା ମନର କଥା ବାସୁଦେବକୁ କହିଲା । ବାସୁ ଶ୍ୟାମବନ୍ଧୁଙ୍କୁ ପିତୃତୁଲ୍ୟ ମାନେ, କହିଲା, "ଆଜ୍ଞା, ମୁଁ ସେହି କଥାଟା କହିବ କହିବ ହେଉଥିଲି ।" ଦୁଇଜଣଙ୍କ ପରାମର୍ଶରେ ରେବତୀକୁ ପାଠ ପଢ଼ାଇବାର ସ୍ଥିର ହେଲା । ରେବତୀ ପାଖରେ ବସି ଶୁଣୁଥିଲା, ଦୁଇ ଚାଲରେ ଘର ଭିତରକୁ ଯାଇ ମା'କୁ ଆଉ ଜେଜୀକୁ, "ମୁଁ ପାଠ ପଢ଼ିବି, ମୁଁ ପାଠ ପଢ଼ିବି" ଖବର ଦେଲା । ମା କହିଲେ, "ହଉ ହଉ ପଢ଼ିବୁ ।" ଜେଜୀ କହିଲେ, "ପାଠ କଣ ଲୋ ? ମାଇକିନିଆ ଝିଅଟା ପାଠ କଣ ? ରନ୍ଧାବଢ଼ା ଶିଖ, ପିଠାପଣା କରି ଶିଖ, ଝୋଟିଦିଆ ଶିଖ, ଦହିମୁହାଁ ଶିଖ, ପାଠ କଣ ?"

ରାତିରେ ଶ୍ୟାମବନ୍ଧୁ ପିଣ୍ଡାରେ ଖଣ୍ଡେ ଆମ୍ବକାଠ ପିଢ଼ା ଉପରେ ବସି ଭାତଖାଉଛନ୍ତି, ରେବତୀ ସାଙ୍ଗରେ ବସି ଖାଉଛି । ବୁଢ଼ୀ ଆଗରେ ବସି—ଭାତ ପୁଞ୍ଜାଏ ଆଣ, ଡାଲିପାଣି ଟିକିଏ ପକେଇ ଯା, ଲୁଣ ଟିକିଏ ଦେ' ଇତ୍ୟାଦି କଥା ବୋହୁ ପ୍ରତି ଆଦେଶ କରୁଛନ୍ତି । କଥାରେ କଥାରେ ବୁଢ଼ୀ କହି ବସିଲେ, "ହଁ ରେ ଶ୍ୟାମ । ରେବୀ ପାଠ ପଢ଼ିବ—ପାଠ କଣ ରେ, ତରିଲିଝିଅର ପାଠ ପଢ଼ା କଣ ?" ଶ୍ୟାମବନ୍ଧୁ କହିଲେ, "ହେଉ କହୁଛି ତ ପଢ଼ୁ । ଝଙ୍କଡ଼ ପଟ୍ଟନାୟକ ଘର ଝିଅମାନେ ଯେ ଭାଗବତ ବୋଲି ପାରନ୍ତି, ବୈଦେହୀଶ ବିଳାସ ଛାନ୍ଦ ଗାଆନ୍ତି ।" ରେବତୀ ଭାରି ଖପା ହୋଇ ଯାଇ ଜେଜୀକୁ ଗାଳି ଦେଇ କହିଲା, "ଯା ଲୋ ବୁଢ଼ୀ ଉଗୁରିଟା ।" ତାହା ବାଦ ଅଳି କରି ବାପାକୁ କହିଲା, "ନାଁ ବାପା, ମୁଁ ପାଠ ପଢ଼ିବି ।" ଶ୍ୟାମବନ୍ଧୁ କହିଲେ, "ହଁ—ହଁ—ତୁ—ପଢ଼ିବୁ ।" ସେଦିନ କଥା ଏତିକି ।

ତହୁଁ ଆରଦିନ ଉପରଓଳି ବାସୁଦେବ ସୀତାନାଥ ବାବୁଙ୍କ ପ୍ରଥମପାଠ ଖଣ୍ଡିଏ ନେଇ ରେବତୀକୁ ଦେବାରୁ ସେ ବଡ଼ ଖୁସି ହୋଇ ବାପା ପାଖରେ ବସି କତାପର ମୂଳପୃଷ୍ଠାଠାରୁ ଶେଷପୃଷ୍ଠା ଯାଏ ଓଲଟାଇ ଓଲଟାଇ ଦେଖିଲା । ସେଥିରେ ହାତୀ, ଘୋଡ଼ା, ଗୋରୁ ଇତ୍ୟାଦିର ଛବି ଦେଖି ଭାରି ଖୁସି ହୋଇଗଲା । ରଜାମାନେ ହାତୀ ଘୋଡ଼ା ବାନ୍ଧି ଖୁସି ହୁଅନ୍ତି, କେହି ହାତୀ ଘୋଡ଼ା ଚଢ଼ି ଖୁସି ହୁଏ, ଆମ ରେବା ଛବିଟା ଦେଖି ଖୁସି । ରେବା ଧାଇଁ ଯାଇ ମା'କୁ କତାପର ଛବି ସବୁ ଦେଖେଇଲା; ତାହା ବାଦ ଜେଜାକୁ ଦେଖାଇଲା । ଜେଜା କାଶିଲା ବିରକ୍ତ ହୋଇ କହିଲା, "ହଁ—ଯା—ଯା— ।" ରେବା ତାକୁ "ଦୂର ଦୂର୍" ଗାଳି ଦେଇ ଫେରି ଆସିଲା ।

ଆଜି ଦିନଟି ଭଲ—ଶ୍ରୀପଞ୍ଚମୀ । ରେବତୀ ସକାଳୁ ବୁଡ଼ ପାରି ଗାଧୋଇ ନୂଆ ଲୁଗା ଖଣ୍ଡିଏ ପିନ୍ଧି ଘର ବାହାର ହେଉଛି, ବାପୁ ଭାଇ ଆସିଲେ କତାପ ପଢ଼ାଇଦେବ । ବୁଢ଼ୀ ଭୟରେ ବିଦ୍ୟାରମ୍ଭର ଆୟୋଜନ କିଛି ହୋଇନାହିଁ । ବେଳ ଛ ଘଡ଼ି ସମୟରେ ବାପୁ ଯାଇ ପଢ଼େଇ ଦେଲା, ସ୍ୱର—ଅ, ସ୍ୱରେ—ଆ, ହ୍ରସ୍ୱ—ଇ, ଦୀର୍ଘ—ଈ, ହ୍ରସ୍ୱ—ଉ, ଦୀର୍ଘ—ଊ, ଇତ୍ୟାଦି ପ୍ରତିଦିନ ପଢ଼ା ଚାଲିଲା, ପ୍ରତିଦିନ ସଞ୍ଜବେଳେ ବାପୁ ଯାଇ ପଢ଼େଇଦିଏ । ଦୁଇ ବରଷ ମଧ୍ୟରେ ରେବତୀ ତେର ପଢ଼ିଗଲାଣି । ମଧୁବାବୁଙ୍କ ଛନ୍ଦମାଳା ପଢ଼ିଯିବାବେଳେ ତୁଣ୍ଡରେ ବାଟୁଳି ବାଜେନାହିଁ ।

ଦିନେ ରାତିରେ ଶ୍ୟାମବନ୍ଧୁ ବସି ଭାତ ଖାଇବାବେଳେ ମା ପୁଅ ଦୁଇ ଜଣ କଥାବାର୍ତ୍ତା ହେଲେ । ପୂର୍ବେ ବୋଧକରୁଁ କିଛି କଥା ହୋଇଥିଲା, ଆଜି ସେହି କଥାର ଉପସଂହାର ।

ଶ୍ୟାମବନ୍ଧୁ—କି ମ, ଭଲ ହେବ ନାହିଁ କି ?

ବୁଢ଼ୀ—ହଁ ଭଲ ତ ହେବ; ଜାତି କଥାଟା ବୁଝିଛୁ ନା ?

ଶ୍ୟାମବନ୍ଧୁ—ମୁଁ ଆଜ ଯାଏ ଆଉ କଣ ବୁଝୁଥିଲି ? ଭଲ କରିଛି; ଗରିବପୁଅ ହେଲେ କଣ ହେବ, ଜାତି ଭଲ ।

ବୁଢ଼ୀ—ଧନ ଦଉଲତ ନାହିଁ ବିଚାର,
ଜାତି କଥାଟା ଆଗେ ପଚାର ।

ଘରେ ରହିବ ତ ?

ଶ୍ୟାମବନ୍ଧୁ—ଘରେ ନ ରହି ଆଉ କୁଆଡ଼େ ଯିବ ? ହଜାର ହେଲେ ମାମୁଁ ମାଇଁ ନା, ଆଉ କଣ—

ରେବତୀ ପାଖରେ ବସି ଭାତ ଖାଉଥିଲା, ଏହି କଥାର ମର୍ମ ସେ କଣ ବୁଝିଲା ସେ ଜାଣେ; ମାତ୍ର ସେହି ଦିନଠାରୁ ତାହାର ଭାବଭଙ୍ଗୀ ଅନ୍ୟ ରକମ ଦେଖୁଅଛୁଁ । ତାକୁ ବାପା ଆଗରେ ବାସୁ ଭାଇ ପଢ଼ାଇଦେଲେ ଉପରେ ଗୋଟାଏ ଲାଜ ମାଡ଼େ; ଅକାରଣ ସକାରଣ ସବୁବେଳେ ହସ ମାଡ଼େ, ମୁଣ୍ଡ ତଳକୁ ପୋତି ଦେଇ ଦୁଇ ଓଠ ଚାପି ହସ ଲୁଚାଏ । ଏଣିକି ବାସୁ ପଢ଼ାଇଦେଲେ କେତେବେଳେ ଭୁଲ ପଡ଼େ, କେତେବେଳେ ଖାଲି ହୁଁ ହୁଁ କରେ, ପଢ଼ା ସରିଲେ ପାଟି ଚାପି ହସି ହସି ଘରକୁ ପଳାଇ-ଥାଏ । ପ୍ରତିଦିନ ସଞ୍ଜବେଳେ ଦାଣ୍ଡଦୁଆର କବାଟକୁ ଧରି କାହାକୁ ଚାହିଁଥାଏ । ବାସୁ ଆସିଲେ ଘରକୁ ପଳାଏ, ପାଞ୍ଚ ଡାକରେ ବାହାରେ ନାହିଁ । ଏଣିକି ରେବତୀ ଦାଣ୍ଡକୁ କେବେ ବାହାରିଲେ ବୁଢ଼ୀ ଖପା ହୁଏ ।

ଦେଖୁ ଦେଖୁଁ ପଞ୍ଚମୀକୁ ପଞ୍ଚମୀ ଦୁଇ ବରଷ ହୋଇଗଲାଣି । ବିଧାତାଙ୍କର ବିଧାନ, କାହାର ଦିନ ସମାନଭାବରେ ଯିବନାହିଁ । ଫଗୁଣମାସିଆ ଦିନ; କାହିଁ କିଛି ନାହିଁ, ଅଚାନକ କାହୁଁ ବାଡ଼ ଆସିଲା—ସକାଳେ ଗ୍ରାମରେ ଶୁଣାଗଲା, ଗୁମାସ୍ତା ଶ୍ୟାମବନ୍ଧୁ ମହାନ୍ତିଙ୍କୁ ବାଡ଼ ଧରିଛି । ମଫସଲ ଗାଁରେ ବାଡ଼ ପଡ଼ିଲେ ତାଟି କବାଟ ପଡ଼ିଯାଏ । ବାଡ଼

ବୁଢ଼ୀ ସତେ ପରା ଛୋଟେଇଟିଏ କାଖେଇ ଦାଣ୍ଡରେ ମନୁଷ୍ୟ ଗୋଟାଉଛି, ଏପରି ସମସ୍ତେ ମଣନ୍ତି । ଦୁଆରକୁ କାହାରି ଆସିବାର ନାହିଁ । ମାଇକିନିଆ ଦୁଇଟା କଣ କରିବେ ? ପିଲାଟା ଡାକ ପାଡ଼ି ଘର ବାହାର ହେଉଛି । ବାସୁଦେବ ଶୁଣି ସ୍କୁଲ ଛାଡ଼ି ଧାଇଁଲା । ଡର ନାହିଁ, ଭୟ ନାହିଁ ଆପଣା ଶରୀର ପ୍ରତି ଭାବନା ନାହିଁ, ଶ୍ୟାମବନ୍ଧୁ ପାଖରେ ବସି ଗୋଡ଼ରେ ହାତ ବୁଲଉଥାଏ, ପାଣି ଟୋପାଏ ଟୋପାଏ ମୁହଁରେ ଦେଉଥାଏ । ବେଳ ତିନିପ୍ରହର ସମୟରେ ଶ୍ୟାମବନ୍ଧୁ ବାସୁମୁହଁକୁ ଚାହିଁ ଖନେଇ ଖନେଇ କହିଲା, "ବାଁ—ସୁଁ ଏଁ—ବଆଁ—ଗି—ଲା ।" ବାସୁ ହୋ ହୋ କରି ଡକା ପାଡ଼ିଲା । ଘରେ ଚହଳ ପଡ଼ିଗଲା । ରେବତୀ ଭୂଇଁରେ ପଡ଼ି ଗଡ଼ୁଥାଏ, ଗ୍ରାମର ଲୋକେ ଶୁଣି କହିଲେ, ହୋଇ ଗଲା ପରା । ଦେଖୁଁ ଦେଖୁ ସଞ୍ଜବେଳକୁ କିଛି ନାହିଁ । କଣ କରିବେ—ବାସୁଦେବଟା କାଲିକା ପିଲା, ଆଉ ଦୁଇଟା ଭୂଆସୁଣୀ । ଗ୍ରାମର ଦିନ ସେଠି ଧୋବା ଜଣେ ଜାଣିବା ଶୁଣିବା ଲୋକ, ତା ଦେହକରେ ପଚିଶ କି ଷାଠିଏ ପାରି କଲାଣି । କାଲି ହେଲେ ଯିବାକୁ ହେବ, ଆଜି ହେଲେ ଯିବାକୁ ହେବ, ଲୁଗାପଟା ଦିଖଣ୍ଡ ମଧ୍ୟ ମିଳିବାର ଭରସା । ଗାମୁଛାଟାଏ ଅଣ୍ଟାରେ ଭିଡ଼ିଦେଇ କୁରାଢ଼ୀଟାଏ କାନ୍ଧରେ ପକାଇ ହାଜର ହୋଇଗଲା । ଗ୍ରାମରେ କରଣ ସେହି ଘରକ, ଶାଶୁ, ବୋହୂ, ବାସୁଦେବ, ତିନିଜଣ ଧରାଧରି କରି କର୍ମ ଚଳାଇଲେ । ସେ ସମୟର କଥାଗୁଡ଼ାକ ଲେଖିବାକୁ ଆଉ ହାତ ଚଳୁ ନାହିଁ । ଶ୍ମଶାନରୁ ଫେରି ଆସିବା ବେଳକୁ କୁଆଁ ତାରା ଉଇଁଲାଣି । ଘରେ ପଶିବା ମାତ୍ରକେ ରେବତୀ ମା ପୋଖରୀପାଣି ଗଲା, ଦେଖୁଁ ଦେଖୁଁ ଦିନ ଦ୍ୱିପ୍ରହର ବେଳେ ଗ୍ରାମରେ ହାଟ ହେଲା, ରେବତୀ ମା ନାହିଁ ।

ଦିନ ଚାଲିଯାଏ, କାହାରି ଲାଗି ଦିନ ବସି ରହେ ନାହିଁ । କାହାରି ପାଲଙ୍କି ଉପରେ ପାଟଛତା, କାହାରି ବେଡ଼ି ଉପରେ କୋରଡ଼ା । ଦିନ ଯାଉଛି ସମସ୍ତଙ୍କର, ଯିବ ସମସ୍ତଙ୍କର । ଦେଖୁଁ ଦେଖୁଁ

ତିନିମାସ କଟିଗଲାଣି । ଶ୍ୟାମବନ୍ଧୁ ଘରେ ଦୁଇଗୋଟି ଗାଈ ଥିଲେ, ତହସିଲ ବାକୀ ଟଙ୍କା ସକାଶେ ଜମିଦାରଘର ଲୋକେ ଆସି ବାନ୍ଧି ଘେନିଗଲେ । ଆମ୍ଭେମାନେ ଜାଣୁଁ, ଜମିଦାର ଘର ଟଙ୍କାକୁ ଶ୍ୟାମବନ୍ଧୁ ଶିବନିର୍ମାଲ୍ୟ ପରି ଜ୍ଞାନ କରେ, ଟଙ୍କାଟିଏ ଅସୁଲ ହେଲେ, ଜମିଦାର କଚେରୀରେ ପେଠ ନ କରିବାଯାଏ ତାହାର ନିଦ ନାହିଁ; ମାତ୍ର ତାହା ଉପରେ ଟଙ୍କା ଥାଉ ବା ନ ଥାଉ, ଗାଈ ଦିଓଟି ବଡ଼ ଦୁଧିଆଳୀ, ଏ କଥା ପୂର୍ବରୁ ଜମିଦାରଙ୍କୁ ଜଣାଥିଲା । ତାହା ଛଡ଼ା ଜମିଦାର ଚଷିବାକୁ ଯେ ତିନିମାଣ ଜମି ଦେଇଥିଲେ, ତାହା ଛଡ଼ାଇ ନେଲେଣି । ହଳଆଠା ବା ଘରେ ଆଉ କାହିଁ ରହିବ ? ଦୋଳପୂର୍ଣ୍ଣିମା ଦିନ ସେ ଗୁଡ଼ିଗଲା । ବଳଦ ଦୁଇଟା ସାଢ଼େ ସତର ଟଙ୍କାରେ ବିକା ଯାଇଥିଲା, ଦୁଇଜଣଙ୍କ ନିତ୍ୟାରେ ଖରଚ ଯାଇ ଯାହା ବଳିଥିଲା, ସଠାବଠା କରି ମାସେ ଚଳିଲା । ଆଜି ତାଳଟା, କାଲି ପିତଳଟା ବିକାବଠା ବନ୍ଧାଛନ୍ଦାରେ ଆଉ ମାସେ ଗଲା । ବାସୁ ଦୁଇ ଓଳି ଦୁଆରକୁ ଆସେ, ରାତି ଘଡ଼ିଏ ଯାଏଁ ଥାଏ, ଆଈ ନାତୁଣୀ ଶୋଇବାକୁ ଗଲେ ବସାକୁ ଯାଏ । ବାସୁ କିଛି ଟଙ୍କା ପଇସା ଦେଲେ ଆଈ ବା ନାତୁଣୀ କେହି ନିଅନ୍ତି ନାହିଁ । ବଳେଇ ବଳେଇ କିଛି ଦେଲେ ତାହା ଠଣାରେ ପଡ଼ିଥାଏ । ବାସୁ ଜାଣିପାରି ଆଉ କିଛି ଦିଏ ନାହିଁ । ବୁଢ଼ୀ ପାଖରୁ ଗୋଟାଏ ଦୁଇଟା ପଇସା ନେଇ ସଉଦା କିଣିଦିଏ, ସେହି ଦୁଇପଇସାର ସଉଦାରେ ଆଠ ଦଶ ଦିନ ଚଳିଯାଏ । ଘରର ଚାଳ ଉଡ଼ିଗଲାଣି, ଛୁଆଣି ଦରକାର । ବାସୁ ଦୁଇ ଟଙ୍କାର ନଡ଼ା କିଣି ବାଡ଼ିରେ ଗଦେଇଛି, ଶରଣ ହେବାରୁ ଛପରବନ୍ଧ ହୋଇପାରି ନାହିଁ । ବୁଢ଼ୀ ଏବେ ଆଉ ଦିନ ରାତି ବସି କାନ୍ଦେ ନାହିଁ । କେବଳ ସଞ୍ଜ ହେଲେ ବସି କାନ୍ଦେ । କାନ୍ଦି କାନ୍ଦି ତଳେ ପଡ଼ିଯାଏ, ସେହିଠାରେ ରାତି କାଟେ । ରେବତୀ ଧକେଇ ଧକେଇ ପାଖରେ ପଡ଼ିଯାଏ । ବୁଢ଼ୀ ଆଖିକି ଏବେ ଭଲ ଦିଶୁନାହିଁ; ବାୟାଣୀ ପରି ହୋଇଗଲାଣି । ଏବେ ସେ

କାନ୍ଦିବାର ଊଣା କରି ରେବତୀକୁ ଗାଳି ଦେବାକୁ ଆରମ୍ଭ କରିଛି । ଏତେ ଯେ ଦୁଃଖ, ଏତେ ଯେ ଦୁର୍ଦ୍ଦଶା ସବୁର ମୂଳ କାରଣ ରେବତୀ, ଏହା ସେ ମନ ମଧ୍ୟରେ ସ୍ଥିରସିଦ୍ଧାନ୍ତ କରି ସାରିଲାଣି । ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ହଳଆ ଗୁଡ଼ିଗଲା, ବଳଦ ବିକାଗଲା, ଜମିଦାରଘର ଗାଈ ବାନ୍ଧି ନେଲେ । ରେବତୀ କୁଲକ୍ଷଣୀ, ସେ କୁଢ଼ଙ୍ଗୀ, ସେ ଲକ୍ଷ୍ମୀଛଡ଼ୀ । ବୁଢ଼ୀ ଆଖିକୁ ଯେ ଦିଶୁନାହିଁ, ତାହାର କାରଣ ରେବତୀର ପାଠପଢ଼ା । ବୁଢ଼ୀ ଗାଳି ଦେବାବେଳେ ରେବତୀ ଆଖିରୁ ଦୁଇଧାର ବହି ଯାଉଥାଏ, ଡରରେ ବୁଢ଼ୀ ପାଖରେ ସେ ଛିଡ଼ା ହୋଇପାରେ ନାହିଁ । ବାଡ଼ିଦୁଆରେ, ନୋହିଲେ ଘରକୋଣରେ ମୁହଁ ଘୋଡ଼ାଇ କାଠଟି ପରି ବସିଥାଏ । ବାସୁ ମଧ୍ୟ ଦୋଷୀ, କାରଣ ରେବତୀ ତ ଏତେ ଦିନଯାଏ ପଢ଼ି ନ ଥିଲା, ସେହି ଆସି ସିନା ପଢ଼ାଇଦେଲା; ମାତ୍ର ବୁଢ଼ୀ ବାସୁକୁ କିଛି କହିପାରେ ନାହିଁ; ବାସୁ ନ ହେଲେ ଘର ଦଣ୍ଡେ ଅଚଳ, ପୁଣି ଜମିଦାର ଘର ଲଟ ଛିଡ଼ି ନାହିଁ । ଜମିଦାର ଘର ଲୋକେ ଆସି ଆଜି ଏ ହିସାବଟା, କାଲି ସେ ହିସାବଟା ମାଗେ । ବାସୁ ନ ହେଲେ ପାଞ୍ଜି ବଢ଼ାରୁ ପଢ଼ି ପତର କାଢ଼ି ଦେବ କିଏ ? ବାସୁ ନ ଥିବାବେଳେ ସେ ସହଜ କଥାରେ କେବେ କେବେ ଆପଣା ମନ୍ତବ୍ୟ ପ୍ରକାଶ କରିଥାଏ । ରେବତୀ ଆଉ ଏଣିକି ସେହି ଗୃହପ୍ରାଙ୍ଗଣସଞ୍ଚାରିଣୀ ଲୀଳାମୟୀ ପ୍ରତିମା ନୁହେଁ, ତାହା ପାଟି ଆଉ କେହି ଶୁଣି ନାହିଁ । ବାପ ମା ଗଲାଦିନୁ ତାକୁ ଦାଣ୍ଡଦୁଆରେ ଆଉ କେହି ଦେଖିନାହିଁ । କେତେ ଦିନଯାଏ ଭେଁ ଭେଁ କରି ଡକା ପାରୁଥିଲା, ଏବେ ଆଉ ପାଟି କରି କାନ୍ଦେ ନାହିଁ, ମାତ୍ର ଦିବାରାତ୍ର ତାହାର ବଡ଼ ବଡ଼ ଆଖି ଦୁଇଟା ସାନ ସାନ ମାଳକଇଁ ପରି ପାଣିରେ ତଳ ତଳ ହେଉଥାଏ । ତାହାର କ୍ଷୁଦ୍ର ପ୍ରାଣ—ତହିଁରୁ ଅତି କ୍ଷୁଦ୍ର ମନଟି ଏକାବେଳକେ ଭାଙ୍ଗି ଯାଇଛି । ତା ପକ୍ଷରେ ବର୍ତ୍ତମାନ ଦିନରାତି ସମାନ । ସୂର୍ଯ୍ୟରେ ଆଲୁଅ ନାହିଁ, ରାତିରେ ଅନ୍ଧାର ନାହିଁ । ସମସ୍ତ ଜଗତ

ଶୂନ୍ୟ । କେବଳ ପିତାମାତାଙ୍କ ମୂର୍ତ୍ତି ହୃଦୟ ପୂର୍ଣ୍ଣ କରିଅଛି । ମା ଏହିଠାରେ ବସିଛନ୍ତି, ବାପା ଚାଲିଯାଉଛନ୍ତି, ତାହା ଆଖିରେ କେବଳ ଏହି ଦୁଇଟା ଦିଶୁଅଛି । ବାପା ମା ମରି ଯାଇଛନ୍ତି, ଆଉ ସେମାନେ ଆସିବେ ନାହିଁ, ଏ କଥା ସେ ବିଶ୍ୱାସ କରି ପାରୁନାହିଁ । ପେଟରେ ଭୋକ ନାହିଁ, ଆଖିରେ ନିଦ ନାହିଁ, ଦିବା ନିଶି ଅନୁକ୍ଷଣ ପିତା ମାତା ଧ୍ୟାନ । ଜେଜୀମା ଉପରେ ଖାଇବାକୁ ବସେ । ଭୂଇଁରୁ ପ୍ରାୟ ଉଠେନାହିଁ । ଦେହରେ ହାଡ଼ ଚମ ଦୁଇଖଣ୍ଡ ଧୂଡ଼ୁଧୂଡ଼ୁ ହେଉଛି । କେବଳ ବାସୁଦେବ ଘରକୁ ଆସିଲେ ଉଠି ବସେ, ବଡ଼ ବଡ଼ ଆଖି ଦୁଇଟାରେ ଜଳଜଳ କରି ବାସୁକୁ ଚାହିଁଥାଏ, ବାସୁ ଅନାଇଲେ ସାନ ନିଃଶ୍ୱାସଟାଏ ପକାଇ ମୁଣ୍ଡ ପୋତିଦିଏ । ବାସୁ ପାଖରେ ଥିବାଯାଏ ତାହାକୁ ଚାହିଁ ରହିଥାଏ । ସେତେବେଳେ ତାହାର ଆଉ କିଛି ଜ୍ଞାନ ନ ଥାଏ—ଆଖିରେ ବାସୁଦେବ, ଚିନ୍ତା ବାସୁଦେବ, ସମସ୍ତ ହୃଦୟଟା ବାସୁଦେବମୟ ।

ଶ୍ୟାମବନ୍ଧୁ ମରିବାର ଆଜକୁ ହାତଗଣତିରେ ପାଞ୍ଚ ମାସ, ଜ୍ୟେଷ୍ଠମାସିଆ ଦିନ, ଠିକ୍ ଦିନ ଦୁଇ ପ୍ରହରବେଳେ ବାସୁ ଦୁଆରେ ଡାକିଲା । ଏତେବେଳେ ସେ କୌଣସି ଦିନ ଆସେନାହିଁ । ବୁଢ଼ୀ କୁନ୍ଥେଇ କୁନ୍ଥେଇ ଯାଇ ଦୁଆର ଫିଟାଇ ଦେଲା । ବାସୁ କହିଲା—"ଜେଜୀମା, (ବାସୁ ବୁଢ଼ୀକୁ ଜେଜୀମା ବୋଲି ବରାବର ଡାକେ) ଡିପୋଟି ଇନ୍‌ସ୍ପେକ୍ଟର ହରିପୁର ଥାନାରେ ବସି ପାଠଶାଳା ପିଲାମାନଙ୍କୁ ପାଠ ପଚାରିବେ, ସବୁ ସ୍କୁଲର ପିଲାମାନେ ଯିବେ, ମୋ ପାଖକୁ ଚିଠି ଆସିଛି, ମୁଁ ପିଲାମାନଙ୍କୁ ନେଇ କାଲି ସକାଳେ ଯିବି, ପାଞ୍ଚଦିନ ଲାଗିବ ।" ରେବତୀ କବାଟକଣରେ ଛିଡ଼ାହୋଇ ଶୁଣୁଥିଲା, ଲଟ୍‌କରି ବସି ପଡ଼ିଲା, ଭାଗ୍ୟେ କବାଟ ଧରିଥିଲା, ନୋହିଲେ ପଡ଼ି ଯାଇଥାନ୍ତା । ବାସୁ ପାଞ୍ଚଦିନ ସକାଶେ ଚାଉଳ, ଲୁଣ, ତେଲ, ବାଇଗଣ କିଣିଆଣି ଅଗଣାରେ ଥୋଇ ଦେଇ ବୁଢ଼ୀକୁ ଜୁହାରଟାଏ ହୋଇ ଶନିବାର ମୁହଁସଞ୍ଜବେଳେ ବାହାରିଲା । ବୁଢ଼ୀ କହିଲା, "ବାପା,

ଖବରେ ବୁଲିବୁ ନାହିଁ, ଦେହପାଆକୁ ଚାହିଁବୁ, ବେଳରେ ଦିଅଟା ଭୁଣ୍ଡରେ ଦେବୁ ।'' ଏହା କହି ନିଃଶ୍ୱାସଟାଏ ପକାଇଲା । ରେବତୀ ଏକଧ୍ୟାନରେ ବାସୁକୁ ଚାହିଁଥାଏ, ଆଜିକା ଚାହାଣି ଅନ୍ୟ ରକମ । ଆଗେ ବାସୁ ଚାହିଁଲେ ମୁଣ୍ଡ ତଳକୁ ପୋତି ଦେଉଥିଲା, ଆଜି ସେ ଭାବନାହିଁ, ଏକଧ୍ୟାନରେ ବାସୁକୁ ଚାହିଁ ରହିଛି । ବାସୁର ମଧ୍ୟ ଆଜି ଆଗକା ଚାହାଣି ନୁହେଁ । ଆଗେ ବାସୁର ଯେମନ୍ତ ଖୁବ୍ ଇଚ୍ଛା—ରେବତୀକୁ ଭଲକରି ଦେଖିବ, କିନ୍ତୁ ଅନାଇପାରେ ନାହିଁ । ଆଜି ଚାରିଚକ୍ଷୁର ମିଳନ; ଆଖିଫେରାଇବାକୁ କାହାରି ଆଗ୍ରହ ନାହିଁ । ବାସୁ ଚାଲିଗଲାଣି, ଆଉ ଦିନ ନାହିଁ, ଘର ବାହାର ଅନ୍ଧାର ହୋଇ ଗଲାଣି । ରେବତୀ ଯେପରି ଚାହିଁଥିଲା, ସେହିପରି ଚାହିଁଅଛି । ବୁଢ଼ୀ ଡାକିବାରୁ ତାହାର ଚେତନା ହେଲା, ଘର ବାହାର ସମସ୍ତ ଅନ୍ଧକାରମୟ ।

ରେବତୀ ବସି ଦିନ ଗଣୁଛି, ଆଜି ଛ ଦିନ । ବାପା ମା ଗଲାଦିନୁ ଦାଣ୍ଡ ଦୁଆର ଦେଖି ନ ଥିଲା, ଆଜି ସକାଳୁ ଦାଣ୍ଡଦୁଆରେ ଦୁଇଥର ମୁହଁମାରି ଗଲାଣି । ବେଳ ଅନ୍ଦାଜ ଛ ଘଡ଼ି, ହରିହରପୁରରୁ ସ୍କୁଲପିଲାମାନେ ଫେରି ଆସିବାମାନେ ଲୋକେ ବୋଲାବୋଲି ହେଲେ—ହରିହରପୁରରୁ ଫେରି ଆସିବା ସମୟରେ ଗୋପାଳପୁରର ବରଗଛ ମୂଳରେ ପଣ୍ଡିତଙ୍କୁ ବାଡ଼ି ଧରିଲା, ଚାରିଥର ପୋଖରୀପାଣି ହେଲା, ଅଧରାତିବେଳେ ଚାଲିଗଲେ । ଗ୍ରାମଲୋକମାନେ ହାୟହାୟ କଲେ । ପୁଅଝିଅ ମା ମାଇକିନିଆମାନେ ପାଟିକରି କାନ୍ଦି ପକାଇଲେ । କେହି କହିଲା—ଆହା କି ରୂପରେ ! କେହି କହିଲା—କି ଧୀର ରେ ! କେହି କହିଲା—ଦାଣ୍ଡରେ ଚାଲି ଯାଉଥିବ ଯେ, ମାଛିଟିକି ମରି କହିବ ନାହିଁ ।

ରେବତୀ ଶୁଣିଲା, ବୁଢ଼ୀ ଶୁଣିଲା । ବୁଢ଼ୀ କାନ୍ଦି କାନ୍ଦି ତାହା କଣ୍ଠ ରୁଦ୍ଧ ହୋଇଗଲା, ଆଉ କାନ୍ଦି ପାରିଲା ନାହିଁ, ଶେଷରେ ଉଠି କହିଲା—
"ଆହା ବାପ, ବିଦେଶକୁ ଆସି ଆପଣା ବୁଦ୍ଧିରେ ପ୍ରାଣ ହରାଇଲୁ ରେ ।"

ଅର୍ଥାତ୍ ସେ ବୁଦ୍ଧି କରି ରେବତୀକୁ ପାଠ ପଢ଼େଇବାରୁ ମରିଗଲା, ନୋହିଲେ କେବେ ମରି ନ ଥାନ୍ତା । ଶୁଣିଲି ବେକ୍ତ ରେବତୀ ଘରେ ଯାଇ ପଡ଼ିଛି—ସୋର ଶବ୍ଦ ନାହିଁ । ସେଦିନଟା ଗଲା, ତହିଁ ଆରଦିନ ସକାଳେ ବୁଢ଼ୀ ରେବତୀକୁ ପାଖରେ ନ ଦେଖି ପାଟିକରି ଡାକିଲା, "ଲୋ ରେବତୀ, ରେବି, ଲୋ ନିଆଁ, ଲୋ ଚୂଲି !" ବୁଢ଼ୀ ବାୟାଣୀ ପରି ହୋଇଗଲାଣି, କାନ୍ଦ ବୋବାଳି ନାହିଁ, କେବଳ ରାଗରେ ଦିନ ରାତି ରେବତୀକୁ ଗାଳି । ପଡ଼ିଶା ଲୋକେ, ବାଣ୍ଟଗଲା ଲୋକେ ଯେତେବେଳେ ଇଚ୍ଛା ସେତେବେଳେ ଶୁଣୁଛନ୍ତି । "ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଚୂଲି !" ବୁଢ଼ୀ ଆଖିକୁ ଦିଶୁନାହିଁ, ଅଣ୍ଡାଳି ଅଣ୍ଡାଳି ଯାଇ ରେବତୀକୁ ପାଇଲା ଡାକିଲା । ଜବାବ ନ ପାଇ ତା ଦେହରେ ହାତ ବୁଲାଇ ଦେଖିଲା, ଭାରି ଜର; ଦେହରୁ ନିଆଁ ବାହାରୁଛି, ଜ୍ଞାନ ନାହିଁ । ବୁଢ଼ୀ ଢେର ବେଳଯାଏ ବସି କଣ ଭାବିଲା । କଣ କରିବ, କାହାକୁ ଡାକିବ, ମନ ମଧ୍ୟରେ ଜଗତ ସଂସାର ଖୋଜିଲା, ପାଖରେ କାହାକୁ ଦେଖିଲା ନାହିଁ । କିଛି ସ୍ଥିର କରି ନପାରି ଖପା ହୋଇ କହିଲା "ଯାହା ଆପଣାକଆ, ତହିଁକି ଇଲାଜ କଆଁ ?" ଅର୍ଥାତ୍ ତୁ ପାଠ ପଢ଼ିବାରୁ ଜର ହେଲା, ମୁଁ କଣ କରିବି ?

ଦିନେ ଗଲା, ଦୁଇଦିନ ଗଲା, ତିନିଦିନ ଗଲା, ଚାରିଦିନ ଗଲା, ପାଞ୍ଚଦିନ ମଧ୍ୟ ଗଲା । ରେବତୀ ମାଟିରେ ଲାଗି ଯାଇଅଛି, ଆଖି ଫିଟାଉ ନାହିଁ, ଡାକିଲେ ଉତ୍ତର ନାହିଁ, ଉଁ ଚୁ ହେବାକୁ ମଧ୍ୟ ନାହିଁ । ଆଜି ଛ ଦିନ, ରେବତୀ ସକାଳୁ ଦୁଇ ଚାରି ଥର ପାଟି କଲାଣି, ବୁଢ଼ୀ ପାଟି ଶୁଣି ପାଖକୁ ଗଲା, ଦେହରେ ହାତ ବୁଲାଇ ଦେଖିଲା, ଗୋଡ଼ହାତ ଶୀତଳ, ଡାକିଲେ ହୁଁ ହୁଁ ଜବାବ ଦେଲା । କଟମଟ କରି ମୁହଁକୁ ଚାହୁଁଛି, କିଛି ନ ପଚାରିଲେ ମଧ୍ୟ କେତେ କଥା କହି ପକାଉଛି । କୌଣସି କବିରାଜ ଦେଖିଲେ, "ତୃଷ୍ଣା ଦାହଃ ପ୍ରଳାପଶ୍ଚ—" ଇତ୍ୟାଦି ଶ୍ଳୋକ ପଢ଼ି କହନ୍ତେ; "ସନ୍ନିପାତସ୍ୟ ଲକ୍ଷଣଂ ।" ମାତ୍ର ବୁଢ଼ୀ କିଛି ଖୁସୀ ହେଲା । ଦେହରେ ତାତି ନାହିଁ; କଥା

କିଛୁ ନ ଥିଲା, ପାଟି ଫିଟାଇଲାଣି, ଗୃହୁଁ ନ ଥିଲା, ଆଖି ଫିଟାଇଲାଣି, ପାଣି ପିଇବାକୁ ମାଗିଲାଣି, ଛ ଦିନ ହେଲା ଜିଭରେ ପାଣି ଟୋପାଏ ବାଜି ନାହିଁ, ଗୃରଟା ପଥି ପେଟରେ ପଡ଼ିଲେ ଝିଅଟା ଉଠି ବସିବ । "ତୁ ଶୋଇଥା, ମୁଁ ଗୃରଟା ପଥି ରାନ୍ଧି ଆଣେ" ଏହା କହି ବୁଢ଼ୀ ବାହାରକୁ ବାହାରି ଆସିଲା । ପଥି ରାନ୍ଧିବ କଣ ? ଘରେ ପାଛିଆ କୁଣ୍ଡେଇ, ହାଣ୍ଡି,ଆଟିକା ସବୁ ଖୋଜିଲା, ମୁଠାଏ ଗୃଉଳ ନାହିଁ । ନିଃଶ୍ୱାସଟାଏ ପକାଇ ଘଡ଼ିଏ ବସିଲା । ବାସୁ ପାଞ୍ଚଦିନକୁ ଗୃଉଳ ଡାଲି କିଣି ଦେଇ ଯାଇଥିଲା, ସେଥିରେ ଦଶଦିନ ଚଳିଗଲା, ବୁଢ଼ୀର ଦୃଷ୍ଟି ଶକ୍ତି ଥିଲେ ବୁଝି ପାରିଥାନ୍ତା । ବସି ବିଗ୍ଚର କଲେ ବୃଦ୍ଧି ଦିଟଶ । ଘରେ କଂସାବାସନ କିଛି ନାହିଁ; ହାତରେ ଗୋଟାଏ କଣା ଡାଲି ଟଙ୍ଗିଲା, ସେଇଟା ଧରି ହରି ସା ଦୋକାନକୁ ବାହାରିଲା । ହରିସା ଘର ଗ୍ରାମ ମଝିରେ,ତାହାର ଖଣ୍ଡମତ ଦୋକାନ ନାହିଁ, ଗୃଉଳ ଡାଲି, ଲୁଣ ତେଲ ରଖିଥାଏ; କୌଣସି ଦିନ ବିଦେଶୀ ଲୋକ ପହଞ୍ଚଗଲେ କିଣନ୍ତି— କେତେବେଳେ ଗ୍ରାମ ଲୋକଙ୍କର କିଛି ଦରକାର ହେଲେ କିଣନ୍ତି । ବୁଢ଼ୀ ଡାଲିଟି ଧରି ହରି ସା ଦୁଆରେ ପହଞ୍ଚିଲା । ହରି ସା ବୁଢ଼ୀ ହାତରେ ଡାଲିଟି ଦେଖି ଅର୍ଥଟା ବେଶ ବୁଝିଗଲା । ବୁଢ଼ୀ ଆପଣାର ଅଭିପ୍ରାୟ ଜଣାଇବାରୁ ହରି ଡାଲିଟା ହାତରେ ଧରି ଗୃରି ପାଖ ଦେଖି କହିଲା "ନାହିଁ ନାହିଁ, ମୋ ଘରେ ଗୃଉଳ ନାହିଁ; ଆଉ ଏହି କଣା ଡାଲିଟା ରଖି କିଏ ଗୃଉଳ ଦେବ ?" ହରି ଘରେ ଯେ ଗୃଉଳ ନ ଥିଲା ତାହା ନୁହେଁ, ଦେବାକୁ ମଧ୍ୟ ଇଚ୍ଛା; ତେବେ ଶସ୍ତାରେ ନେବାର କଥା । ଗୃଉଳ ନ, ଥିବାର ଶୁଣି ବୁଢ଼ୀ ମୁଣ୍ଡରେ ତ ବଜ୍ର ପଡ଼ିଲା । କଅଣ କରିବ, ଝିଅଟା ଜରରୁ ଉଠିଛି, ତା ମୁହଁରେ କଣ ଦେବ ? ଘଡ଼ିଏ ବସିଗଲା; ବେଳ ବୁଡ଼ ଆସିଲାଣି, ହରିକୁ ଦୁଇଥର ଅନାଇଲା । ଯାଏଁ, ଝିଅଟା କଣ କରୁଛି ଦେଖେଁ । ଡାଲିଟିଧରି ଉଠୁଛି, ହରି କହିଲା, "ଦିଅ ଦିଅ, ଡାଲିଟା ଦିଅ, ଦେଖେ ଘରେ କଣ ଅଛି ।" ହରି ଡାଲିଟା ରଖି ଗୃରିମାଣ ଗୃଉଳ, ଅଧମାଣେ ଜାଇ, କିଛି

ଲୁଣ ଦେଲା । ବୁଢ଼ୀ ଗୃହ ଛ ଜାଗା ବସି ଉଠି ଘରେ ଆସି ପହଞ୍ଚିଲା । ଏ ପର୍ଯ୍ୟନ୍ତ ବୁଢ଼ୀ ଦାନ୍ତରେ ଦାନ୍ତକାଠି ବାଜ ନାହିଁ, ଦେହ ମନ କଥା କଣ କହିବୁ ? ଘରେ ପହଞ୍ଚି ରେବତୀକୁ ଡାକଲା । ତାହାର ବିଶ୍ୱାସ ରେବତୀ ଭଲ ହୋଇଗଲାଣି, ପାଣି କାଢ଼ି ଦେବ, ସେ ଭାତ ରାନ୍ଧିବ । ରେବତୀ ଜବାବ ନ ଦେବାରୁ ସେ ଘର ଖପା ହୋଇଯାଇ ଡାକଲା, "ଲୋ ରେବତୀ, ଲୋ ରେବ, ଲୋ ନଅାଁ, ଲୋ ଚୂଲ୍ଲୀ ।" ଜବାବ ନାହିଁ ।

ଏଣେ ରେବତୀର ସନ୍ନିପାତ ରୋଗ କ୍ରମଶଃ ବଢ଼ୁଛି, ଭୟାନକ ଯନ୍ତ୍ରଣା, ଦେହ କ୍ରମଶଃ ଶୀତଳ ହେଉଛି, ଜଭ ଶୁଖିଲାଣି, ଭୟଙ୍କର ପିପାସା; କଣ୍ଠ ଯେମନ୍ତ ଭିତରକୁ ଚାଲିଯାଉଛି । ଥଣ୍ଡା ଜାଗାକୁ ଯିବାର ଇଚ୍ଛା, ଘରଯାକ ଗଡ଼ ଗଡ଼, ବାହାରକୁ ଆସିଲା, ସୁଖ ଲାଗିଲା ନାହିଁ । ବାଡ଼ ଦୁଆରକୁ ଯାଇ ପିଣ୍ଡାରେ ବସିଲା । ଦିନ ଶେଷ ହୋଇ ଆସିଲାଣି, ଖୁବ୍ ପବନ ବହୁଛି, ବାଡ଼କୁ ଆଉଜ ବସିଲା । ବାଡ଼ଯାକ ଅନାଇଲା, ବାପା ଗଲା ବରଷ ଏହି କଦଳୀ ଲଗାଇଥିଲେ, ଭଣ୍ଡା ବାହାରିଲାଣି, ଦୁଇ ବରଷ ତଳେ ମା ଗୋଟିଏ ପିଜୁଳି ଗଛ ବାଡ଼ରେ ରୋଇଥିଲେ, ରେବତୀ ଧାଇଁ ଧାଇଁ କୂଅରୁ ଡାଳେ ପାଣି ସେ ଗଛରେ ଦେଇଥିଲା, ସେ ଗଛ କେଡ଼େଟାଏ ହେଲାଣି, ଫୁଲ ଧରିଲାଣି । ସେ ଗଛ ଦେଖି ମା ମନରେ ପଡ଼ିଲେ । ବୁଦ୍ଧି ସ୍ଥିର ନାହିଁ; ମନ ଚଞ୍ଚଳ, ଲଗାଲଗି କଛି କଥା ମନରେ ପଡ଼ୁନାହିଁ; ମାତ୍ର ମାତାର ଆନନ୍ଦମୟୀ ମୂର୍ତ୍ତି ଆଉ ମନକୁ ଛାଡ଼ୁନାହିଁ । ସଞ୍ଜ ଗଡ଼ିଗଲାଣି, ଗଛ ମୂଳରୁ ଡାଳ ଉଢ଼ାଳରୁ ଅନ୍ଧାରଗୁଡ଼ାକ ବାହାରି ବାଡ଼ ପୂରି ଗଲାଣି, ଆଉ କଛି ଦିଶୁନାହିଁ । ଆକାଶକୁ ଚାହିଁଲା, ପହରକଅା ତାରାଟିରୁ ଧକ ଧକ ହୋଇ କିରଣ ବାହାରୁଛି । ଏକ ଧ୍ୟାନରେ ରେବତୀ ସେହି ତାରାକୁ ଚାହିଁଅଛି, ଆଖିରେ ଆଉ ପଲକ ପଡ଼ୁନାହିଁ । ତାରାର ଆକାର କ୍ରମଶଃ ବଢ଼ି ଯାଉଛି, ଚନ୍ଦ୍ରର ଆକାର ହୋଇଗଲାଣି, ଆହୁରି ବୃଦ୍ଧି, କ୍ରମଶଃ ଉଜ୍ଜ୍ୱଳ । ଆହା ! ଏ କ ମୂର୍ତ୍ତି ତାରା ମଧ୍ୟରେ ? ଶାନ୍ତିଦାୟିନୀ ପ୍ରେମମୟୀ

ଆନନ୍ଦମୟୀ ମାତାଙ୍କର ଅଭୟା ମୂର୍ତ୍ତି ବସି ସ୍ନେହରେ କୋଳକୁ ନେବା ସକାଶେ ଡାକୁଛନ୍ତି । ମା ଦୁଇ ଗୋଟି କରୁଣ ହସ୍ତ ବଢ଼ାଇ ଦେଲେ । ସେହି କରୁଣ ଦଉଟି ଆସି ଦୁଇ ଚକ୍ଷୁ ସ୍ପର୍ଶକରି ହୃଦୟରେ ପ୍ରବେଶ କଲା । ସେହି ଅନ୍ଧକାର ମଧ୍ୟରେ ଆଉ କୌଣସି ଶବ୍ଦ ନାହିଁ; କେବଳ ନିଃଶ୍ୱାସ ଶବ୍ଦ, ସେ ଶବ୍ଦ କ୍ରମଶଃ ପ୍ରବଳ, ଖୁବ୍ ଦୀର୍ଘ ନିଃଶ୍ୱାସ, ଶେଷରେ ମା ମା, ଦୁଇଥର ଅସ୍ପଷ୍ଟ ଶବ୍ଦ ଶୁଭିଲା । ବାଡ଼ି ନିସ୍ତବ୍ଧ, ନୀରବ ।

ଏଣେ ବୁଢ଼ୀ ଘୁଷୁରି ଘୁଷୁରି ଯାଇ ରେବତୀ ଶୋଇବା ଜାଗା ଦେଖିଲା, କେହି ନାହିଁ । ଘରଯାକ, ବାହାର ଅଗଣା, ଢେଙ୍କି ଚାଳ, ଢେଙ୍କି ଲିଞ୍ଜି କାହିଁ ନାହିଁ । ମନେ କଲା, ଜର ଭଲ ହୋଇଗଲାଣି, ବାଡ଼ରେ ବୁଲୁଥିବ । ସେହି ଡାକ—"ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୂଲି !" ବାଡ଼ି ଦୁଆରକୁ ଗଲା, ଅଣ୍ଡାଳି ଅଣ୍ଡାଳି ପିଣ୍ଡାକୁ ଉଠିଲା, ପିଣ୍ଡାଟା ଭୂମିଠାରୁ ଦୁଇହାତ ଉଚ୍ଚ, ହାତେ ଚଉଡ଼ା ।

"ମଲା, ତୁ ଏଇଠି ବସିଛୁ ?" ଦେହରେ ହାତ ଦେଇ ବୁଢ଼ୀ ପ୍ରଥମେ ଚମକି ପଡ଼ିଲା, ଆଉ ଥରେ ଭଲକରି ଗୋଡ଼ଠାରୁ ମୁଣ୍ଡଯାଏ ହାତ ବୁଲାଇଲା, ନାକରେ ହାତ ଦେଇ ଗୋଟାଏ ଉତ୍କଟ ଶବ୍ଦ କଲା, ସଙ୍ଗେ ସଙ୍ଗେ ପିଣ୍ଡା ତଳେ ଦୁଲ୍‌ଦାଲ୍ ଶବ୍ଦ ।

ଶ୍ୟାମବନ୍ଧୁ ମହାନ୍ତି ଘରର କୌଣସି ପ୍ରାଣୀକୁ ଜଗତରେ ଆଉ କେହି ଦେଖି ନାହାନ୍ତି । ପଡ଼ୋଶୀମାନେ ରାତି ପହରକ ସମୟରେ ଶେଷ ଶବ୍ଦ ଶୁଣିଥିଲେ—

"ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୂଲି !"

---

କାଳନ୍ଦୀ ଚରଣ ପାଣିଗ୍ରାହୀ

# ସାପୁଆ

କଟକ ଷ୍ଟେସନରୁ ରେଲରେ ଚଢ଼ି ଦକ୍ଷିଣ ମୁହାଁ ଗଲେ କାଠଯୋଡ଼ି ପାରି ହୋଇ ଆଗ ପଡ଼େ ବାରଙ୍ଗ, ତା'ପରେ ମଞ୍ଚେଶ୍ୱର । ମଞ୍ଚେଶ୍ୱରକୁ କେହି କେହି ରେଲଯାତ୍ରୀ କୌତୁକ କରି କହିଥାନ୍ତି ମ୍ୟାଞ୍ଚେଷ୍ଟର । ଏଠାରେ ଗୋଟାଏ କାଚ କାରଖାନା ହେବ ବୋଲି କେଉଁକାଳୁ ଘରତୋଳା ସରିଛି । କାରଖାନାର ଦେଖାନାହିଁ । ଓଡ଼ିଶା ସରକାର ଏ ପଟକୁ ରାଜ-ଧାନୀ ଘୁଞ୍ଚାଇବେ ବୋଲି ମଧ୍ୟ ଶୁଣାଯାଏ ।

ମଞ୍ଚେଶ୍ୱରଠାରୁ ପଟିଆ ଗାଁଟି ବାଟ ଦୁଇ ତିନି ମାଇଲ । ଗାଁ ମୁଣ୍ଡରେ ଗୋଟାଏ ବଡ଼ ଆମ୍ବ ତୋଟା ତଳେ ଧାଡ଼ିମୂଳିଆ ସାନ ସାନ ଛପର ଘର । ସୈନ୍ୟ ଛାଉଣି ତମ୍ବୁ ପଡ଼ିଲି ଭଳି ଦୂରକୁ ଦିଶେ । ଘର-ଗୁଡ଼ିକରେ ରହନ୍ତି ସାପ ଓ ସାପୁଆକେଳା ।

ରଜ ସମୟ । ଦିନକୁ ଦିନ ଏହି ଘରଗୁଡ଼ିକ ମଣିଷ ଗହଳରେ ଫାଟି ପଡ଼ୁଛି । ରଜସଂକ୍ରାନ୍ତିଠାରୁ ଦଶହରାଯାକେ ସେଠାରେ ସାପୁଆମାନେ ଜମା ହୁଅନ୍ତି । ତା'ପରେ ସବୁ ଶୂନ୍‌ଶାନ୍ ।

ଧଳ ଧଳ ମରଦ ମାଇପେ କେତେ ସାଇଜ ବୁଲି ଫେରି ଆସୁଛନ୍ତି । ମଦନ ବେଦେଙ୍କର ଭାରଟାକୁ କାନ୍ଧରୁ ଓହ୍ଲାଇ ତଳେ ରଖିଦେଲା । ଘର ଭିତରେ ଗୋଟାଏ ପାଖରେ ଅସ୍ଥାୟୀ କୁଡ଼ିଆ କରିବାକୁ ଏକ ରକମ ଫୋଲ୍‌ଡ଼ିଂ ଡାଟି, ଲୁଗା, କନ୍ଥା, ହାଣ୍ଡି, ପଲମ, ଆଉପାଖେ ସାନବଡ଼ ଚକା ଚକା ପେଡ଼ି ।

ସାନ ପେଡ଼ିରେ 'ଗୋବିନ୍ଦ ମୂଷା' । ନୂଆ ବୋହୂ ହୋଇ କୂଅ ଭିତରୁ ବେଗ ବେଗ କରି ସେ ପାଣି କାଢ଼େ, ମାନ୍ୟ ଲୋକ ଆସୁଥିବେ ବୋଲି ଏଣିକି ତେଣିକି ଗୃହିଁ ଧାନ ଶୁଖାଏ, ପୁଣି ଦେଢ଼ଶୁର ଆସିଲେ ତଡ଼ଡ଼ଗ ହୋଇ ଘରକୁ ପଳାଏ ।

ବଡ଼ ବଡ଼ ପେଡ଼ିରେ ଅହିରାଜ, ନାଗ, ଚମ୍ପା—କିଏ ସାତକୋଶିଆ, କିଏ ମଣିନାଗ, କିଏ କପିଳାସ ଅବା ହରିଶଙ୍କର ପର୍ବତରୁ ଧରାହୋଇ ଆସିଛନ୍ତି । ମଦନ ପେଡ଼ି ଫିଟାଇ ତାହା ଭିତରେ ଟିକିଏ ଫୁଙ୍କି ଦେଇ ଗାଏ—

"କଂସର ଘରଣୀ, ପଦ୍ମାବତୀ ରାଣୀ
ସେ କଲା ଧନ୍ୱନ୍ତରି ଓଷା;
ଲକ୍ଷେ ଘର ପଦ୍ମ ଦେବୁ ରେ କହ୍ଲାଇ
ନ ଥିବ ପାଖୁଡ଼ା ମିଶା
କି ଗୋବିନ୍ଦ ହରି ।"

ସାପଟା ଫଣା ଟେକି ଗର୍ଜନ କରେ, ଜିଭ ଲହ ଲହ କରି ସଜୋରେ ମଦନ ଉପରକୁ ଚୋଟ ମାରେ । ଦେଖଣାହାରିଙ୍କ ଛାତି ଦୁଲୁକି ଉଠେ । ମଦନ ପାଟି କରେ, "ଖାଇଲା ଖାଇଲା, ବୁଢ଼ା, ଗଦ ଅଛୁ ଶୁଂଘେଇଦେବି । ମାରିପାରିବୁ ନାହିଁ ।"

ସଞ୍ଜ ଆଗରୁ ମେଘ ଅନ୍ଧାର ଆମ୍ବ ତୋଟାରେ ଘନେଇ ଆସିଛି । ଟୋପ୍ରା ଭଳି ଝିପିଝିପି ପାଣି ବର୍ଷି ଆମ୍ବପତ୍ରରୁ ଟୋପା ଆକାରରେ ଥପ୍‌ଥପ୍ ତଳକୁ ଖସୁଛି । ଘର ଦେହରୁ ଲଣ୍ଠନଟା ଫିଟାଇ ମଦନ ଆଲୁଅ ଜାଳିଲା । ଘର ଆଗ ସାନ ପିଣ୍ଡି ଉପରେ ସଉଦା ତାର ମୁଣ୍ଡ ବୋଝଟାକୁ ଥୋଇଲା । ପିଠିରେ ଲୁଗା ସାଉଁଳରେ ବନ୍ଧା ଯାଇଥିବା ଦୁ'ବର୍ଷର ପିଲାଟିକୁ ବୋଝ ପାଖରେ ରଖିଦେଇ ଚାଲିଲା ଘର ପହଁରିବାକୁ ।

ମେଘୁଆ ହେଲେ ବି ଝାଳରେ ଦେହ ଓଦା ହୋଇ ଯାଉଛି । ଶିରପା ଖଣ୍ଡ ମୁଣ୍ଡରୁ ଫିଟାଇ ମଦନ ସେହି ଘରକୁ ଆଉଜି ସେଥିରେ ଟିକଏ ବସିଲା ହେଲା । ତାହାର ସ୍ତ୍ରୀ ସଉଦା ଘର ପହଁରି ସାରି ମାଠିଆ ଧରି ବାହାରିଗଲା ପାଣି ଆଣିବାକୁ । ମଦନ ସେହିପରି ଘରକୁ ଆଉଜି ହାତକଟା ଫତେଇ ପକେଟରୁ ବିଡ଼ି ଦିଆସିଲି କାଢ଼ି ଲଗେଇଲା । ସ୍ତ୍ରୀ ପାଣି ଆଣି ରୋଷେଇ ଯୋଗାଡ଼ କଲା । ସେଥିପାଇଁ ଆଉ କାହାଠୁଁ ତାର କିଛି ସାହାଯ୍ୟ ଲୋଡ଼ା-ନାହିଁ । ଏଣେ ମଦନ ମହା ଆରାମରେ ବିଡ଼ି ଟାଣୁଛି । କାହାର ମୁହଁରେ କଥା ନାହିଁ । ପିଣ୍ଡା ଉପରେ ଥୁଆ ହୋଇଥିବା ଦୁ'ବର୍ଷର ପିଲାଟି ବି ଏକ ଅଦ୍ଭୁତ ଉଚ୍ଚାଁ ଧରଣର ବଦେଶୀ ନର୍ସିଂ ସ୍କୁଲରେ ଶିକ୍ଷିତ ହେଲା ଭଳି ଚୁପ ହୋଇ ପତ୍ର ଗହଳର ପାଣି ଥପ ଥପ ଶୁଣୁଥାଏ ।

ବଡ଼ଟଣା ସରିଲା ପରେ ଟିକଏ ଥଣ୍ଡା ପବନ ବାଜି ମଦନର ଆଖି ଦୁଇଟି ଢୋଲେଇ ହୋଇ ଆସିଲା ।

ହାତରେ, ମୁଣ୍ଡରେ, ଓଠରେ ଟୋପା ଟୋପା ପାଣି ପଡ଼ୁଥାଏ । ତହିଁକି ପରୁଆ ନ କରି ନିଘଞ୍ଚ ନିଦରେ ସେ ଶୋଇଗଲା ।

ସଉଦାର ଦୋହଲାରେ ନିଦ ଭାଙ୍ଗିଲାରୁ ସେ ଶୁଣିଲା, "ଉଠ୍ ତ; ଭିତରକୁ ଚାଲ୍ !" ନିଦ ମଳ ମଳ ହୋଇ ସେ ଉଠିଲା । ପାଣି ଡାଳଟା

ନେଇ ହାତ ମୁହଁ ଧୋଇ ଘର ଭିତରେ ପଶିଲା । ଗୋଟାଏ ପାଖରେ ଦୁ'ବର୍ଷର ପିଲାଟି ଶୋଇ ପଡ଼ିଛି । ଚୂଲିରୁ ନିଆଁ ତକ କମି ଆସିଲାଣି । ଚକ୍ ଚକ୍ ହୋଇ ମଜା ଯାଇଥିବା ବଡ଼ କଂସା ଭିତରୁ ଗରମ ଭାତ ଆଉ ଛାମଣ୍ଡା ଶୁଖୁଆ ତରକାରୀର ବାମ୍ଫ ବାହାରୁଚ ।

ଖୁସି ହୋଇ ମଦନ ପଚାରିଲା, "ଭାରି ତ ସହଳ ହୋଇଗଲା ।"

'ହେଉ ବସ୍', ସହଳ କଣ । ରାତି କେତେ ହେଲାଣି !'

ସତକୁ ସତ ପାହାରିଆ ଚଢେଇ କୁମ୍ଭାଟୁଆ ଡାକ ଶୁଭି ରାତି ଅଧ ହେବାର ଜଣାଇଦେଲେ । ପଡ଼ିଶା ଘରମାନଙ୍କରୁ କାହାରି ପାଟିଶୁଣ୍ଡ ଶୁଭୁ ନାହିଁ । ଦୂରରୁ ରହି ରହି ଯୋଡ଼ାଏ ବୁଲା କୁକୁର ବାଦବୁଦିଆ କରି ଭୁକ୍କାରେ ସରୁସ୍ୱର ଲମ୍ବାଇ ଭୁକୁଛନ୍ତି ।

ଖାଇସାରିଲାବେଳକୁ ଘର ଭିତରେ ଖଣ୍ଡେ ଖଜୁରି ପଟି ପରା ହୋଇଥିଲା । ତାହାରି ଉପରେ ମଦନ ଲମ୍ବ ହୋଇ ପଡ଼ିଗଲା । ସଉଣୀ କେତେବେଳେ କ'ଣ ଖାଇ ଶୋଇଲା, ସେ ଖବର ତାକୁ ବୁଝିବାକୁ ହେଲା-ନାହିଁ । ଘର ଭିତରେ ବି ଫିଲ୍ଟର ପରି ଆମ୍ବ ପତ୍ରରୁ ଚାଳ ଉପରେ ପୁଣି ଚାଳ ସନ୍ଧିରୁ ମଦନ ଆଉ ସଉଣୀ ଦେହରେ ଥପ୍ ଥପ୍ ପାଣି ପଡ଼ୁଥାଏ । ପେଡ଼ିଭିତରେ ସାପ ଗର୍ଜିଲା, ମୂଷା ଚିଁ ଚିଁ ହେଲା, ଦୂରରେ ବୁଲା କୁକୁର ରହି ରହି ଭୁକିଲେ, ଚଟେଇ ଉପରେ ପଡ଼ି ମଦନ ସଉଣୀଙ୍କର ନାକ ବି ସେଥି ସଙ୍ଗେ ଡାକିଲା ।

ଭୋଳା ସାଇ ଘର ସବୁ ରଜ ଗଲେ ଛପର ହୁଏ । ଗାଁଟା ଯାକ ସମସ୍ତେ ତ ବାରବାଇଜ ବୁଲୁଥାନ୍ତି । ଛପର କରିବ କିଏ ! କବାଟ ଖଣ୍ଡମାନ

ପୁଣି ଶିଳ, ପନିକି ଆଉ ଆଉ ଘରକରଣା ଜିନିଷ ପଟିଆ ଗାଁର ଝାବ ଝାବୁସି, ସଙ୍ଗାତ ମଇନ୍ ଘରେ ରଖିଦେଇ ଯାଆନ୍ତି । ରଜକୁ ଲେଉଟି ଘର ଛପର କରି ବର୍ଷା ଦିନଟା ସେଠାରେ କଟାନ୍ତି ।

ସକାଳୁ ଉଠି ଥାନା ଦଳେଇ ଘରୁ ମଦନ ତାର କବାଟ ଖଣ୍ଡି ଆଣିବାକୁ ଗଲା । ଶିବ ପଧାନକୁ ଆଗରୁ ବଇନା ଦେଇ ଯାଇଥିଲା, ନଡ଼ା ଆଣି ଘର ଛପର କରିବ । ଆଗ ଥାନା ଦୁଆରେ ପହଞ୍ଚି ଯାହା ଦେଖିଲା, ସେଥିରେ ତାକୁ ତାଟକା ଲାଗିଲା । ଥାନା ଘରୁ କଂସା, ଲୋଟା, କବାଟ, ଆଦି ସବୁ ବାହାର ଦାଣ୍ଡ ମଝିରେ ଗଦା ହୋଇଛି । ତାହା ଭିତରେ ମଦନର କବାଟ ଆଉ ପାରିଶୁଆ ହେଁସ ଖଣ୍ଡ ବି ସେମିତି ଗୁଡ଼ା ହୋଇ ପଡ଼ିଛି । ଦଳେଇ ବିଚରା ମୁଣ୍ଡରେ ହାତ ଦେଇ ବସିଛି, ଆଉ ତାର ଘରମଣିଷ ଘରୁ ବାହୁନା ପକେଇଛି ।

ଦାଣ୍ଡ ମଝିରେ କେତେ ଲୋକ ଛୁଡ଼ା ହୋଇଛନ୍ତି । କାହାରି ମୁହଁରେ କଥା ନାହିଁ । ଜମିଦାରଙ୍କ ଗୁମାସ୍ତା ଆଉ ବେକରେ ହାଉଦା ପକାଇଥିବା ଅଦାଲତ ପିଅନଙ୍କୁ ବି ସେଠାରେ ଦେଖିଲା । ଜମିଦାର ଗୁମାସ୍ତାକୁ ସେ ଚିହ୍ନେ । ପଚାରି ବୁଝିଲା, ଖଜଣା ନାଲିସ ହୋଇ ଥାନା-ଦଳେଇର ଘର କ୍ରୋକ୍ ହୋଇଛି । କ୍ରୋକ୍ ଜିନିଷ ନିଲାମ ହୋଇ ଖଜଣାକୁ ପୈଠ ହେବ ।

ଥାନା ଦଳେଇ ମଦନର ପିଲାଦିନର ସଙ୍ଗାତ । ମହାପ୍ରସାଦ ବନ୍ଧୁ ହିସାବରେ ବାହା ପୁନେଇରେ ବେଭାର ଦିଆନିଆ ବି ଚଳେ । ଦିହିଙ୍କ ଭିତରେ ପାଣି ଗଳେନାହିଁ । ଦୂରରୁ ମଦନକୁ ଦେଖି ପକେଇ ଥାନାର ଏମିତି କୋହ ଉଠିଲା ଯେ, ସେ ଆଉ ବସି ନ ପାରି ଗାମୁଛାରେ ଆଖି ଘୋଡ଼େଇ ଘର ଭିତରକୁ ପଳେଇଲା । ତାହାର ଘର ମଣିଷର ବାହୁନା ଆହୁରି ତେଜ ଉଠିଲା ।

ଜମିଦାରଙ୍କର ଏହି ମଧୁଆ ଗୁମାସ୍ତାକୁ ଦେଖିଲେ, ମଦନର ହାଡ଼ ଜଳେ । ତା' ମୁହଁ ଚାହିଁବାକୁ ଇଚ୍ଛା ହୁଏନାହିଁ । ଏହି ଲୋକଟା କେଳା ସାହିରେ ଖଜଣା ବସାଇବାକୁ କେତେ ଥର ଉଗର ଧଇଲଣି । ମଦନ ବେହେରା ଯୋଗରୁ ସେଠାରେ ମୁହଁ ପୁରେଇ ପାରନାହିଁ । ମଧୁ ଗୁମାସ୍ତାକୁ ଦେଖିଲେ ମଦନ ବାଠ ବଙ୍କେଇ ଚାଲିଯାଏ । ତାକୁ ଦଣ୍ଡବତ ହେବାକୁ ଇଚ୍ଛା ହୁଏନାହିଁ । ତେବେ ଆଜ ଆଉ ଉପାୟ କ'ଣ ? ଘାନା ଦଳେଇର ଘର ଝୋକ୍ । ସେ କଥା ମଦନ ବୁଝିବ ନାହିଁ ତ ଆଉ କଏ ?

ସିଧା ଯାଇ ଗୁମାସ୍ତାକୁ ପଚାରିଲା, "ବାବୁ ଆଜ୍ଞା, ଖଜଣା ବାକି ତାର କେତେ ହେବ କି ?"

ଗୁମାସ୍ତା ଫିଙ୍ଗା ଫୋପଡ଼ା କରି କହିଲେ, "କରେ ତା' ପାଇଁ କାହିଁକି ତୋ ମୁଣ୍ଡ ବଥେଇଲା ? ନିଜେ ତ ଚାରିଟା ପଇସା ଖଜଣା ଦେଇ ପାରୁନୁ । କୁକୁଆଁ କୁ କଥା କାହ୍ନ ଗରୁ !"

କଥାଗୁଡ଼ାକ ମଦନକୁ ବରୁଡ଼ ମାଇଲା ଭଳି କାଟିଲା । ଆଉ ବେଳ ହୋଇଥିଲେ ପଦକୁ ପଦେ ଜବାବ ଦେଇଥାନ୍ତା । ବହୁ କଷ୍ଟରେ ନିଜ ମୁହଁ ସମ୍ଭାଳି କହିଲା, "ନାହିଁ ଆଜ୍ଞା, ପଚାରୁଥିଲି ବୁଝିବ ବୋଲି । ମୋର ପରା କବାଟ ଖଣ୍ଡ ତା ଭିତରେ ଅଛି ।"

"ସେଥିକି କାହାର ବଳ ନାହିଁ, ବୁଝିଲୁ ? ଘାନା ତ ତୋର ଘର ଭଉସି ଲୋକ । କାହିଁକି, ତା' ପାଇଁ ଠଙ୍କା କେଭୁଟା ଦେଇ ପକାଉନୁ । ତୋର ହେଲେ କେତେ, ଆଉ କାହାର ହେଲେ କେତେ । ଖଞ୍ଜଣା ନାଲିସ୍ ବୁଝିଲୁ ? ତା' ଘରୁ ଯାହା ବାହାରିବ ସବୁ ନିଲାମ ହେବ ।"

"କେତେ ଖଜଣା ସା'ନ୍ତ ? ସେଇ କଥା ଟିକିଏ ପଚାରୁଚି ! ଆମେ ଭିକାରି ମୁଣ୍ଡ, ଖଞ୍ଜଣା ଦେବାକୁ କାହୁଁ ସାହସ କରିବୁ ?

"ଭିକାରି ମୁଣ୍ଡ କାହିଁକି ? ତମ ରୋଜଗାର ଯାହା ସେ କଥା କ'ଣ ଆମକୁ ଲୁଚେଇବ ? ହଉ ଭଲ ହେଲା । କହିବେଟି ପିଅନ ବାବୁ, ଧାନା ଦଳେଇ ଉପରେ କେତେ ପାଉଣା ? ଏ ତାର ପ୍ରୀତି ବନ୍ଧୁ ! ନଗଦ ଟଙ୍କା ଦେଲେ ତା' ଜନଷ ସେ ରଖିବ ।"

ପିଅନ ବାବୁ ଝୋକ୍ ପରୋଆନା କାଢ଼ି ହିସାବ କରି କହିଲେ, "ଗୃହକର୍ତ୍ତା ର ଖଜଣା ସୁଧମୂଳ ମିଶି ଦଶଟଙ୍କା, ଆଉ ଖର୍ଚ୍ଚ'ବାର୍ଚ୍ଚ' ହୋଇ ପାଞ୍ଚଟଙ୍କା ତେର ଅଣା । ଏରୂପ ଗାଏ ମୋଟ ପନ୍ଦର ଟଙ୍କା ତେର ଅଣା ।"

ଘରକୁ ଲେଉଟି ମଦନ ସାଙ୍ଗେ ସାଙ୍ଗେ ଟଙ୍କାତକ ଆଣି ପିଅନ ହାତରେ ଗଣିଦେଲା । ସାହି ଗୋଟାକର ଲୋକେ କାବା ହୋଇଗଲେ । ଜଣେ ଦି'ଜଣ ପୁରୁଣା ମଣିଷ ମଦନକୁ ଖୁବ୍ ସାବାସ କଲେ । ମଧୁ ଗୁମାସ୍ତାଙ୍କ ମୁହଁଟା କେସରୀ ପଡ଼ିଗଲା ।

ଦିନ ଆଠଟା ଯାଇଛି କି ନାହିଁ, ଚପ୍‌ରାସି ପିଆଦା ଧରି ଗୁମାସ୍ତା ଆସି କେଳା ସାହିରେ ହାଜର । "ଘର ପିଚ୍ଛା ଅଣାଏ ଲେଖାଁ ଖଜଣା ଦେବାକୁ ହେବ । ସମସ୍ତେ ତମେ ରୋଜଗାରପନ୍ତ କରୁଚ । ରାଜସ୍ୱ ନ ଦେବ କାହିଁକି ?"

ମଦନ କହିଲା, ଆଜଯାକେ ତ ଦଉ ନ ଥିଲୁଁ, ଆଜ କାହିଁକି ଦବୁ ?"

ଗୁମାସ୍ତା ଘୋସା ହୋଇ କହିଲେ, ଆଜଯାକେ ଦଉ ନ ଥିଲ, ତୁମକୁ ଦୟା କରି ଛୁଡ଼ ଦିଆଯାଇଥିଲା । ଏବେ ତ ଘର ଦୁଆର କରି ରହିଲଣି ।"

"ମାସ ଛ'ଟା ଘରେ ରହିବୁଁ କି ନାହିଁ, ସେଥିପାଇଁ ଖଜଣା ଦେବୁଁ ?"

"ଢକୁଟାଏ ରହିଲେ ବି ଖଜଣା ଯିବବ, ବୁଝିଲୁ ? ସେ ସବୁ, ବାକ୍‌ଗୃଭୂସ୍ଥ ଆଉ ଏଣିକି ପଟିବ ନାହିଁ ?"

"ବାକ୍‌ଗୃଭୂସ୍ଥ କ'ଣ ବାବୁ ? ଆଜ ଖଜଣା ଦେଲେ କାଲ ତମେ ଘର କୋରଖି କରବ । ଜମିଦାରଙ୍କର ଆମେ କ'ଣ ଖାଇଲୁ, ସାରିଲୁଁ ଯେ ଖଜଣା ମାଗୁଛ ? ଗଛରୁ ଆମ୍ବ କସିଟାଏ କି ଗାଡ଼ଆରୁ ମାଛଟାଏ ପାଇଁ ତ ଆମେ ଭଜନ ନୋହୁଁ । କୂଅରୁ ମୁନ୍ଦେ ପାଣି କାଢ଼ି ପିଇବାକୁ ତ ମନା, ତମେ ବାଟରେ ଗୃଲୁଥିଲେ ଆମେ ତ ଯିବୁଁ ଅବାଟରେ । ଆଉ ଖଜଣା ଦେବୁଁ କେଉଁଥିପାଇଁ ? ପୁଣି ଆଜ ଆମେ ପଟିଆରେ ଥିଲେ କାଲ କଟକ, ତା'ଆରଦିନ ଢେଙ୍କାନାଳ, କାହାକୁ ଦେବୁ ରାଜସ୍ୱ ?"

ଗୁମାସ୍ତା ମଦନକୁ ଛାଡ଼ି ଆଉମାନଙ୍କୁ ପଗ୍ଭରିଲା । ସମସ୍ତେ ଜବାବ ଦେଲେ "ମଦନ ଯାହା କହିବ, ସେଥିରେ ଆମର ସ୍ୱୀକ ।"

ବଡ଼ ବଡ଼ ଆଖି ଦେଖାଇ ଗୁମାସ୍ତା ମଦନକୁ କହିଲେ, "ତୁଇ ତେବେ ସବୁରି ଭିତରେ ମେଳଆ । ଆଗୁ ହଉ, ରାଜସ୍ୱ ନ ଦେଲେ କ'ଣ ହୁଏ ବଳେ ବୁଝିବୁ ।"

ମଦନର ଆଖି ଦୁଇଟା ବି ଲାଲହୋଇ ଉଠିଲା । ନିଶରେ ହାତ ମାରି ସେ ଜବାବ ଦେଲା, "ହଁ ବୁଝିଛି, ସେ ଧମକ ଆଉ କାହାକୁ ଦେଖେଇବ ।"

ଗୁମାସ୍ତା ରାଗରେ ଫେରି ଯାଉଥିଲେ । ହଠାତ୍ କିଏ ଆସି ତାଙ୍କ ବାଟ ଓଗାଳି ଛିଡ଼ାହେଲା । ଗୁମାସ୍ତା ଦେଖିଲେ ମଦନର ଭରିଯା ସଉରି । ସେ ହାତ ଯୋଡ଼ି କହିଲା, "ଆଜ୍ଞା, କେତେ ଖଜଣା, ମୁଁ ଦେବି ।"

ସାହୁସାକର ମରଦ ମାଇପେ ଗୁମାସ୍ତାକୁ ଘେରିଗଲେ । ଯେତେ-ହେଲେ ସରକାରୀ ଲୋକ । ତାଙ୍କୁ ଏମିତି ରଗେଇଲେ କଣ ଭଲ ହେବ ? ଗଲା ଗୁରି ବର୍ଷରେ ଖଜଣା ହିସାବ ହେଲା । ଟଙ୍କାଏ ଆଠଣା କରି ସବୁ ଖଜଣା ଦାଖଲ କଲେ । ଟଙ୍କା ଦେଖି ଗୁମାସ୍ତା ମିଜାସ୍ ଥଣ୍ଡା ଧରିଆସିଲା ।

ଖଜଣା ଦାଖଲ ପରେ ସାପୁଆମାନେ ବାହାରିଗଲେ । ମଦନ କହିଲା, "ତମେ ସବୁ ଯାହା ଇଚ୍ଛା କର । ମୁଁ ଏଥର ବାହାରିଲି ।" ବୁଢ଼ା ସାପୁଆ ନଧିଆ ପଚାରିଲା, "କୁଆଡ଼େ ଯିବୁ ?"

"ଯୁଆଡ଼େ ମୋର ଇଚ୍ଛା, ମୁଁ କାହାରି ପ୍ରଜା ହୋଇ ରହିବି ନାହିଁ ।"

ଜଣେ ଠାପରା କରି କହିଲା, "ପ୍ରଜା ହବୁ ନ ତ ଆଉ କ'ଣ ରଜା ?"

ସମସ୍ତେ ହସି ଉଠିଲେ । ବୁଢ଼ା ନଧିଆ କହିଲା, "ଆରେ ହସିବା କଥା ନୁହଁ । ଯୁଆଡ଼େ ଗଲେ ବି ତମର କଣ ସାହା ଅଛି ? ମୁଁ କହେ କଣ କି ସାପ ଖେଳେଇ ଏଣିକି ଆଉ ତମର ସବୁ ଚଳିବ ନାହିଁ । ଖଜଣା ଯଦି ଦେଲ, ତେବେ ଗୁଣ୍ଡେ ପାଏ ଚାଷ ଆରମ୍ଭ କରିଦିଅ । କାହିଁକି ବାରି-ବାଇକି ବୁଲିବ ? ଚାଷବାସ କରି ତ ମହାସୁଖରେ ଲୋକେ ଚଳୁଛନ୍ତି । ଆମର କାହିଁକି ଏତେ ହିନସ୍ତା ? ଗାଁଭିତରେ କାହାଘରୁ ଚୋରିଗଲା ତ ପୁଲିସ ଆସି ଆମଘରେ ଖାନତଲାସ କରିବ ! କାହାକୁ ସାପ ମାଇଲେ ତ ଦୋଷ ହେଲା ଆମର ।

ମଦନ ମନକୁ ସେ କଥା ପାଇଲାନାହିଁ । ଚୋରି ଡକେଇତି ହେଲେ ପୁଲିସ୍ ଆଗ ତାଙ୍କୁ ସନ୍ଦେହ କରେ ସତ । ମାତ୍ର ଫାଇଜତି

ଖାନତଲାସ ସବୁ କରେ । ଭଲ ଘର ଥିଲେ କି ଜମିବାଡ଼ି ଧନ ସମ୍ପତ୍ତି ଥିଲେ, ଏତେ ସାହାସ କରନ୍ତା ନାହିଁ । ତେବେ ପ୍ରଜା ହେଲେ ଯେ, ଘାନା ଦଳେଇ ଭଳି ଖଜଣା ନାଲିସରେ ଘର କୋରକ ଆସିବ, ସେତେବେଳକୁ ପିଠିରେ ପଡ଼ିବ କିଏ ? ସଉଗ୍ରା ତ ତାଙ୍କୁ ଆଗରୁ କେତେ ଲଗେଇଚି, ଭାଗବଖରା ହେଲେ ବି ଚୃଷ କରିବାକୁ । ଚୃଷକାମ ସେ କେବେହେଲେ ଶିଖି ନାହିଁ । କରନ୍ତା କିମିତି ? ଯାହାହେଉ ମଦନ ଠିକ୍ କଲା, ସେ ଆଉ ଏ ଗାଁରେ ରହିବନାହିଁ । ତେବେ ତାର ସାଙ୍ଗସାଥୀ ବନ୍ଧୁ କୁଟୁମ୍ବ ଭିନଗାଁ ସାପୁଆଙ୍କୁ ଛାଡ଼ି ସେ ଯିବ କୁଆଡ଼େ ? ସମସ୍ତେ ତାକୁ ତ ଯାବୁଡ଼ି ଧରିଛନ୍ତି । ସେ କହିଲେ ତ ସମସ୍ତେ ଆଜ ନଆଁ କୁ ଡେଇଁବେ ।

ମୂଣ୍ଡର ବାଳଗୁଡ଼ିକୁ ଆଙ୍ଗୁଠିରେ କୁଣ୍ଡେଇ କହିଲା, "ଏ ଲାଗେ କଣ ଆମ ହାତରେ ଚୃଷ କାମ ହେବ ?"

ବୁଡ଼ା ନଧିଆ କହିଲା, 'ନ ହବ କ'ଣ ଆମ ହାତରେ ? ବଣ ପାହାଡ଼ରେ ବୁଲି ସାପ ଧରି ଜନ୍ତୁକୁ ଯେ ପୋଷା ମନଉଚି, ତା ହାତରେ ନ ହବ ପୁଣି କ'ଣ ? ଆମରି ଭିତରୁ ତ ଶଙ୍କୁରା, ଦାସିଆ ଘରଦୁଆର ଚୃଷବାସ କରି ରହିଲେଣି ।"

ହଳ, ହଉା ପାଣି କାଦୁଅ ସଙ୍ଗେ ମଦନର ମନେ ପଡ଼ିଲା ନଈ, ପାହାଡ଼, ଜଙ୍ଗଲ । ଆକାଶର ଚଢ଼େଇ ଭଳି ଯେ ଦୁନିଆଁ ଖେଦୁଥିଲା, ସେ ଆଜ ପଞ୍ଜୁରି ଭିତରେ ବନ୍ଦ ହେଲା ଭଳି ଘରକରି ରହିବ କିମିତି ?

ସଉଗ୍ରା ତାକୁ ବୁଝେଇ କହିଲା; "ଚୃଷ ନ କଲେ ନାହିଁ । ଠାବ ଖଣ୍ଡେ ହେଲେ କର୍ । ତେବେ ତ ଆଉ ଗୁମାସ୍ତା ଆସି ତଡ଼ିଦେବାକୁ ନ ଥିବ ।"

ସଉରୀ କେତେ କାନ୍ଦୁ ଲଗେଇଛି ଜମି କିଣି ଘର ତୋଳିବାକୁ । ତାହାର ସଙ୍ଗାତ ଧାନା ଦଳେଇ ବି ସାନଭାଇ ଖଣ୍ଡେ ଦେବ ବୋଲି କହିନଛକ ଯାଉଛନ୍ତି । କାହାର ପ୍ରଜା ହେବନାହିଁ ବୋଲି ସେ କିଛି ଶୁଣୁ ନ ଥିଲା । ପୁଣି ନିଜର ସାଙ୍ଗମେଳ ଗୁଡ଼ ସାହିରୁ ଯାଇଁ ଅଲଗା ଘରକରି ରହିବାକୁ ତାକୁ ଜମା ସୁଖ ଲାଗୁ ନ ଥାଏ । ତେବେ ବୁଢ଼ା ନଧିଆର କଥା ଶୁଣି ତା' ମନ ଟିକିଏ ଟଳିଲା ।

ସେହି ଦିନ ଧାନା ଦଳେଇ ସାଙ୍ଗେ ସେ କଥାକରି ଆସିଲା । ଧାନା ଖୁସି ହୋଇ କହିଲା, "ଘର୍‌ସମ୍ଭ ଦିଆନିଆ ପଛେ ହବ । କବଲ୍‌ଟା କାଲି କରିଦେଇ ପଚଶ ତିରିଶ ଯାହା ଗୋଟାଏ ଦାମ୍ ବସେଇ ଦବ ।।"

କାଠ ବାଉଁଶ ପାଇଁ ବେଶି ଧନ୍ଦ ହେବାକୁ ପଡ଼ିଲା ନାହିଁ । ସଉରୀ ନିଜ ବେକରୁ ସୁନା ସୋରିଷିଆ ମାଳଟା କାଢ଼ି ମଦନ ହାତକୁ ବଢ଼େଇ ଦେଲା । ମଦନକୁ ସେ ନ ଦେଇପାରେ କ'ଣ । ସେ ଯେ ତାକୁ ଜୀବନ ଦେଇଛି ! ସେତେବେଳେ ବୟସ ତାର ଊଣେଇଶି କୋଡ଼ିଏ । ସାପ କାମୁ-ଡ଼ାରେ ଅଚେତା ହୋଇ ପଡ଼ିଥିଲା । ଯୋଗକୁ ମଦନ ଆସି ନ ଜୁଟନ୍ତେ, ଜାରମହୁରି ନ ଲଗାଏ କି ଗଦ ନ ପିଆଏ, ସଉରୀ ବଞ୍ଚିରି ନ ବଞ୍ଚେ । ହୋସ୍ ଆସିଲାରୁ ଯେମିତି ଆଖି ଫିଟାଇଛି, ପହିଲେ ନଜର ପଡ଼ିଲା ମଦନ ଉପରେ । ମୁଣ୍ଡରେ ବାବୁରି ବାଳ, ଚାରିପାଖ ଠେକା ଖଣ୍ଡେ ଭିଡ଼ା ହୋଇଛି ନାକ ତଳେ କଳା ମଚମଚ ଦି'ପଟା ମୁଞ୍ଛ, ବାହାରେ ଗୋଟାଏ ରୂପା କଙ୍କଣ । ବଣିଆ ଘର ବିଧବା ଝିଅ ସଉରୀର ଛାତିଟା ଗୋଟିଏ ବଡ଼ ନିଃଶ୍ୱାସରେ ଫୁଲି ଉଠିଥିଲା । ତାହାପରେ କେବେ ଦିନେ ସେ ଜାତିକୁଳ ପଛକୁ ପକାଇ ତାର ଜୀବନଦାତା ସଙ୍ଗେ ବାହାରି ଆସିଛି । ସେତେବେଳେ ମଦନ ତାକୁ ପଚାରିଥିଲା, "ଆମେ ତ କେଳାଜାତି, ଗାଁ ଗାଁ ବୁଲି ପେଟ ପୋଷୁଁ । ତୁ କ'ଣ ବୁଲି ପାରିବୁ ?" ସଉରୀ ଜବାବ ଦେଇଥିଲା, "ତୁ କେଳା

ହେଲେ ତ ମୁଁ କେଳୁଣୀ ।" ଦୁହିଁଙ୍କ ଭିତରେ ଦିନେ ଛଡ଼ାଛଡ଼ି ନାହିଁ । ସେ ଦିନ କଥା ଦୁହେଁ ଆଜି ପାସୋରି ପକାଇଛନ୍ତି । ତେବେ ଘର ଭିତରେ ଯେ ପିଲାଦିନୁ ରହି ଆସିଛି, ତାକୁ ସବୁବେଳେ ବାହାରେ ବୁଲିବାକୁ ସୁଖ ଲାଗିବ କମିତି !

ସେଥିପାଇଁ ଏଣିକି ସବୁବେଳେ ସଉରୀ ମନ ଉଛନ୍ନ ହୁଏ, ଘର ଖଣ୍ଡିଏ କରନ୍ତା । କଖାରୁ, କଲରା ଗଛ ଦି'ଟା ଲଗାନ୍ତା । କଂସା, ଲୋଟା କି ଶିଳ, ଚକି ଦି'ଖଣ୍ଡ ରଖନ୍ତା, ଆଗ ତ ଖଣ୍ଡିଏ ଠାବ ଲୋଡ଼ା ।

ମଦନ ବେଦେଇଆର ଘର ତିଆରି ବେଶି ଦିନ ଲାଗିଲାନାହିଁ । ଆମ୍ବତୋଟା ତଳୁ ଛପର ଖଣ୍ଡି ଉଠାଇନେଇ ଧନା ଦଳେଇଠାରୁ କବାଲା କରିଥିବା ନିଜ ଡିହରେ ରହିଲା । ଶିଳ, ଚକି, କଂସା, ଲୋଟା, କଖାରୁ କଲରାରେ ଦିନଯାକ ଲାଗି ସଉରୀକୁ ତର ମିଳିଲା ନାହିଁ ।

ବୁଢ଼ା ନଧିଆ କହିଲା, "ହଁ, ଯା ନା ଯେ ପୁଅପଣିଆ ।" ମଦନକୁ ଟିକିଏ ଫୁରସତ୍ ମିଳିଲେ ସାଙ୍ଗମେଳ ଭିତରେ ଦିନ କଟାଏ । ଏଣିକି ସାଙ୍ଗସାଥିଙ୍କ ଭିତରୁ କେହି କେହି ତାକୁ ଟିକିଏ ଖାତିର କଲେ । ଯେତେ-ହେଲେ ତ ସେ ନିଜର ଖଣ୍ଡେ ଠାବ କଲାଣି । ମଦନ ହସରେ ଉଡ଼ାଇ ଦେଇ କହେ, "ଆରେ, ଯାକୁ କହନ୍ତି, ଆ ବଳଦ ମତେ ବାନ୍ଧ୍ । ଆଜି-ଯାକେ ରାଜା କଣ, ରାଜସ୍ୱ କଣ ଜାଣି ନ ଥିଲି । ଏବେ ନିଜ ହାତରେ ନିଜେ ବେଢ଼ି ପିନ୍ଧିଲି । ଖାଲି ସଉରୀ ଯୋଗୁ ସିନା, ନହିଲେ ମୁଁ କଏ, ଘର କଏ !"

ଦଶହରା ଅଳ୍ପଦିନ ଥାଏ । ଲାଗେ ଲାଗେ ଗାଁ ଭିତରେ ତିନି ଘରଟା ଚୋରୀ ହୋଇଗଲା । ପୁଲିସ ତଦନ୍ତ ଚାଲିଲା । କେଳା ସାହି ଉପରେ ପଡ଼ିଲା ସବୁରି ନଜର । ଘର ଘର ତଲାସ ହେଲା, ଚୋରୀ ଜିନିଷର କିଛି ସନ୍ଧାନ

ମିଳିଲା ନାହିଁ । ଛ ସାତ ଜଣ କେଳାଙ୍କୁ ସନ୍ଦେହରେ ଗିରଫ କରାଗଲା । ମାତ୍ର ଫଳ୍ପକ୍ତରେ କିଛି ଫଳ ହେଲା ନାହିଁ । ଶେଷରେ ହଳ ହଳ କରି ହାତକଡ଼ି ପିନ୍ଧି ଗୁଲାଣ ହେଲେ ।

ସଉରୀ ମଦନକୁ କହିଲା, "ଦେଖିଲୁ ତ ? ଅଲଗା ହୋଇ ଘରଖଣ୍ଡି ଥିଲୁ ବୋଲି ତ ଆମେ ଗ୍ରୁଡ଼ ପାଇଲୁଁ ।"

ମଦନ କହିଲା, "ଖାଲି ମିଛ, ଖାଲି ମିଛ । ଆଉ କଏ ଚୋରି କରି ତାଙ୍କ ମୁଣ୍ଡରେ ଥୋଇ ବୋଲିଛି । ମୁଁ ମକଦ୍ଦମା ଲଢ଼ି ସମସ୍ତଙ୍କୁ ମୁକୁଳେଇ ଆଣିବ ।"

ସାପୁଆମାନେ ଗିରଫ ହେବା ପଛେ ପଛେ କେଳାସାହି ଖାଲି ହୋଇଗଲା । ସାତ ଆଠଟା ଘର ବନ୍ଦ ଗଲାଣି । ଆମ୍ବତୋଟା ତଳ କୁଡ଼ିଆ-ଗୁଡ଼ିକ ମାଟିରେ ମିଶିଯାଇଚି । ସଉରୀ ଆଜଯାକେ ଚକେଇଛି । ମଦନ ମକଦ୍ଦମା ଲଢ଼ି ସାରି ଫେରିନାହିଁ ।

———

ଶ୍ରୀ ଗୋପୀନାଥ ମହାନ୍ତି

# ଚୋର

ଗାରେ ହେଲେ ଲେଖନ୍ତା !

ଅନ୍ତତଃ, "ତୁମେମାନେ କେମିତି ଅଛ ?" ମୁଁ ଭଲ ଅଛି । ଯାଗ କୋହଲା, ଖରା ବି କାକର ଲାଗୁଛି । ଘାସ ମରି ଆସିଲାଣି । ପିଣ୍ଡାରୁ ତଳକୁ ଓହ୍ଲାଇବାକୁ ମୋ ଗୋଡ଼ ଉଠୁନାହିଁ । ରନ୍ଧୁଟି ଅଛି ବୋଲି ମୋର କିଛି ଅସୁବିଧା ହେଉନାହିଁ । ତେବେ, କେଉଁଠେ ଶୂନ୍‌ଶାନ୍ ସ୍ତେ ଘର । କୁଆଡ଼େ ସବୁ ରହିଲରେ ! ତୁମ ପଢ଼ା ବହିତକ ହ୍ୱିପାଜରରେ ସଜା ହୋଇ ରହିଛି । ଆଉ ତୁମ ଫଟୋତକ, ତମ୍ଭ ଫୁଟିବା ଦିନଠୁଁ ପକ୍ଷି ଲାଗି ଉଡ଼ିଯିବାଯାକେ । ଆଉ ହଁ, କବାଟଗୁଡ଼ାକ ଖଣ୍ଡର ହେଲାଣି, ଚଟାଣ ଦବିଲାଣି । ଗୁଡ଼ ତ ଗଲେ, ଜାଣିଚ । ଏବେ ଠାଏ ଠାଏ ଘାରି ଉଇ ଫୁଟୁଛି । ସେଇ ଉଇକୁ ବି ବେଶି ଡର ! ଆସିଲ ତ ନାହିଁ ! କାହାପାଇଁ ଏ ଘରେ ଚଉକିଦାର ହୋଇ ଜଗିଥିବିରେ !"

ଏମିତି କେତେ ଆଗୁଡ଼ୁ ଯାଗୁଡ଼ୁ ତ ଲେଖି ହୁଅନ୍ତା ! ସେହି— ଯେଉଁଗୁଡ଼ାକ ହାଣ୍ଡିରେ ଗୁଡ଼ଳ ଫୁଟିଲାପରି ଠକ ଠକ ହୋଇ ଗବଗବ ହୋଇ ତା' ମୁଖେ ଖାଲି ଫୁଟୁଥାଏ ।

କିନ୍ତୁ ସେ ଗାରେ ବି ଲେଖେ ନାହିଁ ।

ମନିଅର୍ଡ଼ର ଆସିଲେ ଦସ୍ତଖତ କରେ, ଇଂରେଜୀରେ—"କେ. ବି. ମଲ୍ଲିକ ।"

ଚିଠି ଆସିଲେ ପଢ଼େ, ଥୋଇ ଦିଏ, ମୁହଁର ଭଙ୍ଗୀ ବଦଳେନାହିଁ ।

ସେମାନେ ଆସନ୍ତି ନାହିଁ, ଆସିଲେ ଆସନ୍ତି ଭଗ୍ନାଂଶ ପରି, ଜଣେ ଦି'ଜଣ ଦି'ଦିନ ନ ରହୁଣୁ ପଳାନ୍ତି ।

ଏଠା ଯେମିତି ଖାଇ ଗୋଡ଼ାଏ, ଏଠି ସତେକି କାନ୍ଥରେ ବାଡ଼ରେ ସବୁଠି ଖାଲି ମାଳ ମାଳ କୁହୁକ-ଦର୍ପଣ, ଏ ଘରେ, ଏ ହାତରେ, ଯେଉଁଠି ଗଛଗୁଡ଼ାକ ଜଙ୍ଗଲ ହେଲଣି ସେଠି—ଏ ମଣିଷଙ୍କଠି—ସେ କୁହୁକ ଦର୍ପଣରେ ଖାଲି ଦିଶେ ଥାକ ଥାକ ହୋଇ ଅଷ୍ଟତଷ୍ଟା, ଉଡେଇଯାଏ, ବର୍ତ୍ତମାନର ଗୁଳ ବି ଦିଶେ ନାହିଁ ।

ଏ ଅସ୍ତିତ୍ୱ ପଡ଼ିରହେ ସଞ୍ଜ ଗାଧୁଆ ପରେ ଗାଁ ପୋଖରୀ ପରି, ଅନ୍ଧାରତଳେ ଅରମା ଉହାଡ଼ରେ ସ୍ଥିର ପାଣି ଅରଏ, ଅଛି କି ନାହିଁ କିଏ କହିବ ?

କିଏ ସେ ? ପଡ଼ଶୀଙ୍କୁ ପଚାରିଲେ କହିବେ ତାଙ୍କ ପରିଚୟ—

"ଓଃ । ସେ ?"

"ସେଇ ବୁଢ଼ା ?"

"ଓ ସେ ଘର ?"

ସେତିକି ।

ଡାକବାଲା ଠିକଣା ପଢ଼ି ଚିଠି ବାଛେ—

"ଜେ. ଏ. ମଲ୍ଲିକ, ଘର ନମ୍ବର ହଜାରେ ଆଠ, ହୁଁ ମେଇ୍ ବଜାର୍ ଡିଡ଼ୁଆ ।" ବେଳେବେଳେ ଉପାଧିରୁ କେତୋଟା—"ଏମ୍. ଏସ୍‌ସି. ଆର୍ ) ଅବସରପ୍ରାପ୍ତ ଅର୍ଦ୍ଧସଞ୍ଚାଳକ (ଖୋଳ) । ଚିଠିଏ ଖଠି ଦେଲେ ଉପାଧି ଛାଡ଼ନ୍ତୁ ନାହିଁ, ସେ ତ ତାଙ୍କର ବଳକା ସମ୍ପତ୍ତି । ଡାକବାଲା ସେ ସବୁ ପଢ଼େ ନାହିଁ, ତା'ର ଦ'ଧାଡ଼ି ଦରକାର, ଯୋଡ଼ଏ ପଦ—

"ହଜାରେ-ଆଠ" ଓ "ହୁଁ ମେଇ୍—ବଜାର୍ ।"

ଆଉ କିଏ ସେ ? ଠିକଣା ପଢ଼େ ନାହିଁ । କେବେ ଖଠି ଖୋଲୁ ଖୋଲୁ ଆଖିରେ ପଡ଼ିଗଲେ ଲାଗେ ସେଗୁଡ଼ାକ ନିରର୍ଥକ । ଶୂନ୍ୟଆଡ଼କୁ ତା' ଆଖି ଡେରିହୋଇ ରହେ—ଟେବୁଲ୍ ସେପାଖେ, ମେଲା ଝରକାବାଟେ —ହତା ଡେଇଁ ପାଚେରି ଡେଇଁ, କେତେ କୋଠା, ଗଛ, ଚଳନ୍ତ ଗହଳି ଡେଇଁ କୋଠାବଣର ସୀମା ସେ କରେ, ଯେଉଁଠି ବସୁଧା ସରିଛି ତା ଉପରେ ଚେନାଏଁ, ଯେତିକି ଶୂନ୍ୟ ଆକାଶ ସେଇଆଡ଼କୁ । କ'ଣ ଥାଏ କେଉଁଥିରେ ? ତା'ଠି ସ୍ପନ୍ଦନ ହେଲେ, ସେତିକି ଭାଷା ଅଳୁହା ହୋଇ ବାଜେ—ସେଇ ତା'ର ଅନାହତ ଧ୍ୱନି ।

ଆକାଶ କମ୍ପେଇ ଜେଟ୍ ବିମାନ ଯାଏ, କିଏ ଗଲା ? ରାବଣ, ସେ ଯୁଗର କି ଏ ଯୁଗର, ନା ରାମ କେହି, ଚେତନାଭିତରେ ଭାଷାର କଡ଼ି ଗୋଟିକିଆ ଛତୁଟିଏ ପରି ମୁଣ୍ଡ ଟେକୁ ଟେକୁ ପୁଣି କୁଆଡ଼େ ଉଭେଇଯାଏ । ମୁହୂର୍ତ୍ତି ମୁହୂର୍ତ୍ତିକେ ଆଲୁଅର ରଙ୍ଗ ଆଉ ଶବ୍ଦରେ ବଦଳି—ଝରଝର ବରଷା, ଝିଲମିଲ ଜହ୍ନ ଆଲୁଅ, ସୁଲୁସୁଲୁ ପବନ —ଯାଉ, ଭେଦେ ନାହିଁ ତାଠିଁ "କ'ଣ ଥାଏ କେଉଁଥିରେ ? କି ଯାଏ ?" କିନ୍ତୁ ବେଳେ ବେଳେ, ଅନନୁଭୂତ ତା' ଚେତନାଭିତରେ ନୂଆ ଅର୍ଥ ଖେଳିଲା ପରି ଆଭାସ ସ୍ଫୁରେ; କିନ୍ତୁ ସେ ନୂଆ ଖାଲି ଅଜ୍ଞାତର ପୁଣି—ଆବିଷ୍କାର, ଖଠିର ଖୋଳପା ଫାଳିଟିଯାଏ କୁହୁକ ଦର୍ପଣ, ସାମ୍ନାରୁ ପର୍ଦ୍ଦା ଉଠେ ।

ପଦ୍ଧ'। ଉଠିଛି । ଓଃ ! କି ଆନନ୍ଦ ! ଆଉ ତା' ସଙ୍ଗେ ସଙ୍ଗେ କି ଦୁଃଖ ଅନୁଭୂତ ! ଲୋଡ଼ନାହିଁ; କିନ୍ତୁ ତଥାପି ତାକୁ ଦେଖିବାକୁ ପଡ଼ୁଛି, ଗୁଡ଼ିଏ ଉଲ୍ଲୂସେଇ ଦେହ ଶୀତେଇ ଦେଇ ଆନନ୍ଦର ତେଉ, ତା' ସହିତ ସେ ତେଉର ସଢ଼କପେଷା ରୋଲର୍‌ର ଓଜନ, ଖତରା ପଞ୍ଜରା ହାଡ଼ ଉପରେ ହାତୁଡ଼ି ପାହାର । ଉଦୁମୂଦା ହୋଇ ବଲବଲ କରି ଗୁହିଁ ରହିଛି ଖାଲି, ମନର କନ୍ଦର ଭିତରକୁ ଚର୍‌ଚରେଇ ଚର୍‌ଚରେଇ ପଶିଯାଉଛି ଗୋଟିଏ କ୍ଷୀଣ ସ୍ୱର—"ମୁଁ ତ କାହିଁ ନ ଥିଲି ଦେଖିବି ବୋଲି ! ମୁଁ ତ କାହିଁ ନ ଥିଲି ଦେଖିବି ବୋଲି ! ମୁଁ ତ କାହିଁ ନ ଥିଲି ଦେଖିବି ସତ୍ୟର ଚେହେରା, ଫାଳେକେ ଭୀଷଣ ଫାଳେକେ ସୌମ୍ୟ ଶାନ୍ତ—ହୋଇଥାଉ ଯାହା ! ମୁଁ ତ ଲୋଡ଼ି ନ ଥିଲି ଦେଖିବି ବୋଲି ବିଶ୍ୱରୂପ ! ଓଃ ! କାହିଁକି ? କେଉଁଟା ସତ, ଶୂନ୍ୟ କି ପୂର୍ଣ୍ଣ ? କି ଯାଏ ମୋର ? କି ଯାଏ ?" କ୍ଷୀଣରୁ କ୍ଷୀଣତର । ବନ୍ଦ । ପଶୁ ସେ ଅନ୍ଧାର ଗମ୍ଭୀର ଭିତରେ । ଗଡ଼ୁ ତଳେ, ସେହି ଯେଉଁଠି—ମୂଷାମାଟି ରଣଭଣ, ବଲେଇଘୁଅ ସଣ ସଣ । ସେଇଟା, ଯାହାର ସ୍ୱର ସବୁବେଳେ କ୍ଷୀଣ, ଶୁଭେ ଖାଲି ସବୁ ଲୁନଚାନ ପଡ଼ିଲେ, ସେଇଟା କୁଆଡ଼େ ରାଣୀ ଏଠି ! ବନ୍ଦ ।

ହେଇ, ହାଉଯାଉ, ଦପଦପ, ଜଳଜଳ, ଝମଝମ, ଝଣର ଝଣର, ଢୁଡ଼ା, ଠୋଠା—"ହେଇ, ମୁଁ ମୁଁ ମୁଁ ।"

"ଆବେ ତୁ କୋହୁଁ ମୁଁ, ମୁଁ ମୁଁ ମୁଁ, ଦେଖ୍ ମତେ" "ଓ ଜି ହାମେ, ଦେଖ୍ ଆମର୍ ବାଢ଼ି ଅଛି, ଦାଢ଼ି ଅଛି, ତୁମେ ମାଖୁନା, ଚକ୍‌କଣ ଥୋଡ଼ି" "ଆବେ ଯାଃ—ମତେ ଦେଖ—ମିଁ ମିଁ କା ମାଣିକ ରଜା—ଶିଙ୍ଗ ଦି'ଟା ଗୋଜା ଗୋଜା—ଏକ ଶିଙ୍ଗେକେ ମଣିଷ ମାରେ, ଦୁଇ ଶିଙ୍ଗେକେ ପର୍ବତ ତାଡ଼େ" ! "ଓଃ ! ମରିଗଲି ! ମାରିଦେଲ !" "ଶ୍ରୀରାମ୍ !"

ମୁ ଣ୍ଡଟା ଚକ୍‌କର୍ ଦେଲା ।

ସେ କହୁଛି ନୁହେଁ । ପର୍ଦ୍ଦା ଉଠିଛି । ଲଫାଫାଟାର ଠିକଣା ଦେଖୁ ଦେଖୁ । ଏମ୍. ଏସ୍. ସି. (ଆଗ୍) । ସେ କେତେ ହାଡ଼ଭଙ୍ଗା ପରିଶ୍ରମ ଯଙ୍କର ଚରୁ ! କେତେ ସ୍ୱପ୍ନ ୱେଠକୁ ଥିଲି ବିଶ୍ୱବିଦ୍ୟାଳୟମାନଙ୍କ ! ଆମେରିକା ତ ଯିବାର ହୋଇଥିଲା; ତା'ର ବାପା ଯଦି ଡାକ୍ତରଖାନାରେ ପଡ଼ି ନ ଥାନ୍ତେ ! ବା—ପା । ଧୂଆଁ ଆଉ ତାତିରେ କଳା ପଡ଼ିଥିବା କାଠ ଗଣ୍ଡି ଟାଏ ପଡ଼ିଛି, କରିକେ, ଅସୁବିଧା ନାହିଁ, ତେଉଁ ଯାଇ ହେବ । ହଁ, କାହାକ ଭୁଙ୍ଗିଛି । ଗୃହଆଡ଼ କଅଁଳ ଖବରେ ୱଲମଲ, ତାଉ ନାହିଁ । ସେଇଠୁ ? ହଁ, ଝୋଟ ଗୃଷ ବିଭାଗ, ଆଉ ତାଲୁଏ ତାଲୁଏ ପାହାଚ ପାହାଚ, ଉଠି ଉଠିକା 'ଅଧ୍ଯ ସଞ୍ଚାଳକ' ଦାୟିତ୍ୱ ପାଇବାଯାକେ "ଉଠି ଉଠିକା ।" କମି ଖଟଣି, କମିଦିନ ଲଗିଲା ? ଆଉ ସେଠି ବ, ସେ କ'ଣ ହଂସୁଲି ଶେଯ ? ନା, ତଳେ କାଆଁ, ଉପରେ କାଆଁ, ମଝିରେ କାଆଁ, ମଝିରେ ବସିଛି—ବୁଢ଼ା ମିଆଁ । ଓଃ ! କେତେ କଷ୍ଟ ! କେତେ ପରିଶ୍ରମ ! କେତେ ଯତ୍ନ ।

ଫଳିଲା । ଶେଷରେ ଫଳିଲା ।

ଶୁଖିଲା ହସରୁ ସରୁ ହାବୁକାଟିଏ ସେ ମୁହଁ ଉପରେ ଆସ୍ତେ ଚହଲିଗଲା, ତା ଉହାଡ଼ରେ ଗଖିରରେ କେଉଁଠି, ଶୂନ୍ୟେ ଶୂନ୍ୟେ ସ୍ଥିର ହୋଇ ଲମ୍ବି ରହିଥିବା ଗଡ଼ଶାର କଥରିଲା ଆଖିରେ ସେହି ପୁଣି ଗୁହାଁ ରହି ଦେଖୁଥାଏ—ଓଃ, ! ଅସାଧାରଣ ସଫଳତା, ଚମତ୍କାର ଯୋଜନା, କେତେ ଶବୁତା ବଦ୍‌ନାମ୍, ବିପଦ, ଜାଲ, ଉଦାହର, ଗୁପ୍ତ ଦୁକୁଦୁକୁ, ଅନିଦ୍ରା, ଅଶାନ୍ତି, ତା' ଉପରେ ଅଜାଡ଼ି ହୋଇ ପଡ଼ୁଥାଏ ପ୍ରଶଂସା, ସମ୍ମାନ, ବାହ-ବାହ୍‌କାର । ଅସଂଖ୍ୟଥର ପରଖକରି ସେ ବାହାର କରିଥିଲା ଉପାୟ ଓ ଜାତିଜାତିକା ନଳତା ବିହନ; ନାହିଁ ନ ଥିବା ବାଗ ।

ଓଃ ! ଝୋଟ ! ଝୋଟ ! ଝୋଟ କ୍ଷେତକୁ ଯାଅ, ବିଶ୍ୱବିଦ୍ୟାଳୟ ଯାକେ ନଳତା ହିଁ ବ୍ୟାପିଛି । ଧାନ ବନ୍ଦ, ଖାଲି ଝୋଟ ପବତକୁ ଯାଅ,

ଖାଲୁଯାକ ଦେଖ ନଳତା ଜଙ୍ଗଲ । ଆଶ୍ଚର୍ଯ୍ୟ ହେଉଛ ? ଉପାୟ କାଢ଼ିଲା ସେ । ନଳତା ଉଡ଼ିଲା ପାହାଡ଼ ପୋଖରୀକୁ, ଅଲସିକୁ ବ, ଉଡ଼ିଲା ରାଜ୍ୟ ଯାକର ରବ ଫସଲକୁ । ଉପାୟ ବାହାର କଲା ସେ, ସବୁ ଜେ. ବ ମଲ୍ଲିକର ମୁଣ୍ଡ ଆଉ ହାତକାମ । ଗାଁକୁ ଗଲେ, ଅମଳ ଦିନେ ନଳତା ସଢ଼ୁଥିବାର ସେହି—'ଗନ୍ଧ' ନୁହେଁ 'ବାସ୍ନା',—ସେ ତ ସାଫଲ୍ୟର ବାସ୍ନା, ଟଙ୍କାର ବାସ୍ନା ।

ଆହୁରି ସରୁ ହାବୁକାଟିଏ, ପୋଖରୀ ଉପରକୁ କେଉଁଠି ଡେଇଁଲା ଗୋଟାଏ ବେଙ୍ଗ କ ଧଣ୍ଡ ମୁହଁ ଆଗରେ ଚେଙ୍ଗଟିଏ ଡେଇଁପଡ଼ିଲା । କିଏ ଜାଣେ ! ପୁଣି ସେହି ସରୁ ହସ କେଉଁ ଗାଁରେ ବୁଢ଼ୀଟିଏ କାଳସୀ ଲାଗିଲା ପରି ଉତ୍ତର ପଡ଼ୁଛି ।

"ଇରେ ଏଇ ଯୋଗିମାଖିଆ ବାଇ ଲଗେଇଦେଇ ଆମ ଧାନଗଣ୍ଡିକ ବୁଡ଼େଇ ଦେଲାରେ ! ଗାଁଯାକ ସମସ୍ତେ କଣିଖିଆ ହୋଇଗଲେରେ । ଆମେ ଗରିବଗୁରୁବା ଧାନ ଦି'ଟା କୁଟୁଥିଲୁଁ କ କ୍ଷେତରୁ ହେଲେ ଗୋଟେଇଥିଲୁ, ଆମ ଦାନା ମାରିଲାରେ ।" ଫୁରୁକୁଟି ପରି ନାଚ ନାଚ ହସ୍ତକ ଦେଖାଇ ପାଟି କରୁଛି, "ଖାଲି ଟେଙ୍କା—ଟେଙ୍କା—ଝୋଟ ଖାଇବୁଁ—ଝୋଟ ସଢ଼ୁଥିବା ପାଣି ପେଟେ ପେଟେ ପିଇ ସ୍ୱର୍ଗକୁ ଯିବୁଁ—ଖାଲି ଟେଙ୍କା—ଟେଙ୍କା—"

"ଇଲୋ ମାଉସି, ଇଲୋ"

"ଆଃ—ମୋ ଗିରସ୍ତ ବୟସର ! ମୁଁ ଯାଉଛୁ ଯ୍ୟାଙ୍କର ମାଉସୀ ହବାକୁ ।"

'ହେଇଟି ଶୁଣ ମୋ କଥା । ଟଙ୍କାକୁ ନ ଚିହ୍ନିଲେ 'ଘରକୁ ଲକ୍ଷ୍ମୀ ଆସନ୍ତି ନାହିଁ ଲୋ । ତେମେ ଝୋଟ ବଢ଼ାଇବ. ବେଗାବେଗି ଧନ କମେଇବ, ଘୁଉଳ ତ ପଇସା ଥିଲେ କିଣିବ, ସରକାର ଯୋଗେଇଦେବେ—'

'ହଁ, ସରଗପୁର ଗୃଉଳ ଆଣିବେଟି, ଆମେ ଜାଣିଚୁ ।"

"ଆଲୋ ଶୁଣ ! ପେୃ କବା କଥା । ଝଙ୍କା ଆମ ଦେଶର ଦରକାର ବୋଲି ଆମେ ପର୍ ଆମ ପାହାଡ଼ରୁ ଲୁହାପଥରତକ ବଦେଶୀଙ୍କି ବକୁଚୁ । ବଦେଶୀ ତାକୁ ଆଉଟି ଲୁହା କର ସେଥିରେ ତୋପ କମାଣ, ଖଣ୍ଡା ବନ୍ଧୁକ କର ଆମ ଶତ୍ରୁଙ୍କୁ ଯଦ୍ଧ ବକଲେ, ଆମେ କ'ଣ ମନା କରପାରୁଚୁ ? ଜାଣି ଜାଣି କାଇଁକ ଆମ ଲୁହାପଥରତକ ବକ ଦେଉଚୁଁ ? ଖାଲ ଏଇଥିପାଇଁ, ଯେ ଆମର ଅଇଚ୍ଛ ନଗଦନାରାଏଣ ଘର ଦରକାର, ନ ହେଲେ ଆମ ଦେଶ ଏମିତ ଗରବ ହେଇ ପଡ଼ଥିବ, ନେଙ୍ଗୁଡ଼ ଛୁଉଥିବ, ଆଉ ମାଟିତଳେ ଲୁହା କ ସୁନା ଯେତେ—"

"ବାହ୍-ବାହ୍-ବାହ୍ ବାହ୍"—ଶୁଭ ଶୁଭଯାଏ ବହୁତ ଭୁଣ୍ଡରେ ଝୋଟଗୃଷୀମାନଙ୍କ ପ୍ରଶଂସା ଓ ଉଲ୍ଲାସ ଆଉ ତା' ଉହାଡ଼ରେ ସେଇ ଏକବାଗିଆ ବୁଢ଼ୀର ଝିଙ୍ଗାସ "ଆରେ ରଖିଥା, ଦେଖିବ ରଇଥା ଶାହାସ୍ତ ପର୍ କହୁଚ୍ଛ, ଆପଣା ହସ୍ତେ ଜଭ୍ୟା ଛେଦ—କେ' ତାର ଅଚ୍ଛ ପ୍ରତବାଦ— ଶାହାସ୍ତ ବଚନ ମିଥ୍ୟା ହବ ?"

ଗୃକଘରେ ବଡ଼ତ, ଖାତର, ହାକମି—ଗୋଡ଼ାଣିଆଙ୍କ ଅନୁନୟ, କାଁରେଇ ହୋଇ ଗୁରେଇ ଭୁରେଇ—"ଆଜ୍ଞା ମୋ କଥା ଟିକଏ—"। ପିଠିରେ ଉପରିକଙ୍କ ଆଉଁଷା "ମଲ୍ଲିକ ବାବୁ ନ ହେଲେ କଚ୍ଛ ହୁଏ ?" ହ୍ୟାଲୋ ହ୍ୟାଲୋ—କଏ ମଲ୍ଲିକବାବୁ ! ସେ ଯାହା କଥା କହୁଥିଲ, ବୁଝିବେ, ହୁଁ ।"

ତା'ପରେ ଗୃକଘରୁ ଅବସର ନେବା ବେଳ, ପେନ୍ସନ୍ ଆଉ ତା'ପରେ—ତା'ପରେ—

ଏଡ଼େଇ ହେଉନାହିଁ । ସେ ସ୍ମୃତି, କିଏ ଯେମିତି ମାଡ଼ି ବସି ଦେଖାଉଛି "ଦେଖ୍ -- ଦେଖ୍—ସବୁ ଦେଖ—ଆହୁରି ଦେଖ୍— । ବିଶ୍ୱରୂପ ସ୍ୱେ, ଦେଖିବୁ ସବୁ, ଯିବୁ କୁଆଡ଼େ ?" କଙ୍କଡ଼ାବିଛା ଗୁଡ଼ାଏ ନାହୁଡ଼ ମାରୁଛନ୍ତି । ଓଃ ! ଝିମାବୋଉ ! ସେଇ ତ ସବୁ ହୋଇଥିଲା ମଲ୍ଲିକର ପାଦତଳେ ନ-ଦବଲା ଝାଣ ଚଝାଣ, ମୁଣ୍ଡ ଉପରେ ଗ୍ଲାନିର ଗ୍ଲାଇ, ଦେହ ଉପରେ ଚମ । ପିଣ୍ଡ ଭିତରେ ଉଷୁମ ସବୁ । ଗଲା ।

ସେଇଠୁ ନସ୍ତବ୍ଧତା ଆଉ—ଆପେ ଆପେ, ଯେମିତି ଚମ ଉପରେ ଭିତରୁ ବାହାରି ଚହଟିଯାଏ ଗୋଟାଏ ଚକଣା—ସତେ ଯେମିତି ତରଳ ମହମ—ଯେମିତି ଖଣ୍ଡି ଆଟିଏ ହେଲେ କୁଆଡ଼ୁ ରକ୍ତଭିତରୁ ସେହି ଫାଟ ଜଗିବାକୁ ଧାଇଁ ପଡ଼ନ୍ତି ଧଳା ରକ୍ତକଣା—କିଏ ଯେମିତି ଏଇ ଥିବାପଣମୟ ପିଣ୍ଡ ଭିତରେ କେଉଁଠି ଥାଇ ବିଏ ବରଗି । ସେମିତି ସେ ମଳମପରି ଚଟ ଚଟ ହୋଇ ଆପେ ଆପେ ବୋଳି ହୋଇଗଲା—ପାଣି, ପବନ, ତାତି, ଖରା, ମାଟି, ଆକାଶରୁନ୍ଧା ସୂର୍ଯ୍ୟ, ଚନ୍ଦ୍ର ତାରା ସବୁ ରୁନ୍ଧା ଗୋଟାଏ ବିସ୍ମୃତି ।

ଶୁଣିଥିଲା କି ସେ ! ଶୁଭୁଥିଲା ପରା ଅନ୍ଧାର ଗହ୍ୱରି ଭିତରୁ ଥିରି ଥିରି ପାଠି—'ଅର୍କ' ପଡ଼ିବ । ଶୋଇବ ଆସ ।"

କିନ୍ତୁ ପାରୁଛି କାହିଁ ! ମଲମର ପୁଟ ଆଡ଼େଇ ଆଡ଼େଇ ଦେଉଛି, ଉଖାରି ହେଲାଣି ଘା—ମୁହଁ, ହାଉଲେ, ଟିକିଏ କଣେକେ—ପୋଡ଼ୁଛି କାଟୁଛି—ଲାଗୁଛି ବୋଧହୁଏ ଦେହ ସହା ହେଲାଣି ପରା—ଗୋଟାଏ ବିଶ୍ୱାସ—ସତେ ଯେମିତି ତା'ରି ଉପରେ ଭରା ଦେଇ କରି ଲେଉଟେଇ ଆସ୍ତେକିନା ଟେକ ହେଉଛି ଶେଯ ଉପରେ, କହୁଣୀ ଚକରେ ଭରା ପଡ଼ୁଛି ପାପୁଲିରେ ମୁଣ୍ଡଟା—ଥରଥର, ଟଳ ଟଳ, ରହିଗଲା ବାଗେକେ ତିରା ଉପରେ, ବେକମୁଣ୍ଡାରୁ ଧରି ଚିପୁଛି କିଏ ?—ଦେଖ୍ ଦେଖ୍ ଦେଖ୍—"

ଦେଖୁଛି ମଲ୍ଲିକ—ଜେ.ବି. ମଲଲ୍ଲ ନା' ସେତେ ନିରର୍ଥକ ନୁହେଁ ଆ.ଦ୍ୟ ଅକ୍ଷର ଦିଟା, ଜ୍ଞାନ—ଭୂଷଣ ।

"ଦେଖିବ ମୁଁ ।"

ପେନ୍‌ସନ ଘଡ଼ି, କିନ୍ତୁ ସେ ତ ଭାବି ନାହିଁ କେବେ ଯେ ସେ ନେବ ଅବସର ! ବରଂ ସେତିକବେଳେ ତ ତା' ଜ୍ଞାନ ତା' ଅଭିଜ୍ଞତା ରସୁଆଳ ପାକଳ ହୋଇ ହୋଇ ଆସୁଛି ଆଗଠୁଁ ସବୁଠୁଁ ବେଶି ବୋଲି ସେ ଭାବୁଥିଲା ତା' ଦକ୍ଷତା ପହଞ୍ଚୁଛି ଚରମସୀମାରେ—ହେବ ତ, ହେବାର କଥା, ମଣିଷ ଉଦ୍‌ଯୋଗରେ ଲାଗିଥିଲେ ବର୍ଷ ବର୍ଷ ଗଡ଼ିଲେ ପ୍ରାଜ୍ଞ ହୁଅନ୍ତି । କିଏ ପ୍ରାଜ୍ଞ ହୋଇ ବାହାର କରନ୍ତି ନଆ ଧର୍ମମାତ, କିଏ ନୂଆ ରାଷ୍ଟ୍ରମାତ, କିଏ ନୂଆ ଅର୍ଥମାତ, କିଏ ଆପଣା ରାଷ୍ଟ୍ରପାଇଁ ନୂଆ ବୈଦେଶିକମାତ, କିଏ ଦର୍ଶନ, କିଏ କାରିଗରି, ସେମିତି ଜେ. ବି. ମଲ୍ଲିକ ଭାବୁଥିଲା ସେ ବାହାର କରିବାକୁ ଯାଉଛି ଗୋଟାଏ ନୂଆ ପ୍ରକାର ନଳତା, ନୂଆ ପ୍ରଣାଳୀରେ ତାକୁ ଚାଷ କରିବା ଉପାୟ । ବହୁବର୍ଷ ହେଲା ସେ ପରଖୁଥିଲା ଢୁଙ୍ଗାବାଲିରେ ନଳତା କରିବା ଉପାୟ, ଆଉ ପର୍ବତର ଶିଖ ଉପରେ ବି ଯେଉଁଠି ଡେଙ୍ଗା ଡେଙ୍ଗା ଘାସ ହୁଏ, ଅନ୍ୟ କିଛି ହୁଏ ନାହିଁ । ସିଦ୍ଧାନ୍ତ ତା'ର ଟିପା ଖାତାରେ ହିଁ ଅଛି, ସେ ଆଉ ଟିକିଏ ଉପାୟ ଅଦଳ ବଦଳ କରି ଦେବ, ତା' ପରେ—ହେବ ।

ଠିକ୍ ଏତିକବେଳେ ତାକୁ ଚାକିରିରୁ କେବେ ଅବସର ଦିଆଯାଇପାରେ ?

ସାଙ୍ଗମାନେ, ତଳର ଲୋକେ ତା' ମନ ଭିତରର କଥାକୁ ପ୍ରତିଧ୍ୱନି କରି ତା କାନରେ ଶୁଣାଉଥିଲେ,

"ଆପଣଙ୍କୁ କିଏ ଛାଡ଼ିବ ! ଅସମ୍ଭବ ।"

ତଥାପି, କ୍ୟାଲେଣ୍ଡରରେ ଜନ୍ମ ତାରିଖଟା ଆସି ପହଞ୍ଚିଗଲା ଛପନ ଥରକ, ହାତ ଘଣ୍ଟାରେ ଘଣ୍ଟା କଣ୍ଟା ମିନଟ କଣ୍ଟା ଅଭ୍ୟସ୍ତ ନିୟମରେ ଗତିକଲେ, ଦୂରଟା ପାଖକୁ ଆସିଥିଲା, ସେ ଅବସର ଗ୍ରହଣ କାଗଜ ଦସ୍ତଖତ କଲା ।

ସତ । କିନ୍ତୁ ସେ ଭାବିଲା ରହିଥିବ ସେ, ଆଇନ ଅନୁସାରେ ନିଯୁକ୍ତିର ରଙ୍ଗଟାକୁ ଟିକିଏ ସେମାନେ ବଦଳେଇ ଦେବେ, ତା' ନାଁ ପୁନର୍ନିଯୁକ୍ତି । "ଟିକିଏ ଅଦଳ ବଦଳ" ସେ ତ ସମୟର ଗତି ଅନୁସାରେ ମଙ୍ଗମୋଡ଼ା ।

ତାକୁ କେହି ଡକାଇ ପଠାଇବାଯାକେ ସେ ବସି ରହି ନ ଥିଲା, କାନ୍ଧ ସଳଖେଇ ଗୁଣ୍ଡି ଫୁଲେଇ ତା'ର ପୁରୁଣା ମରିସ ଗାଡ଼ିରେ ଚଢ଼ି ସେ ପଦାକୁ ବାହାରି କେତେ ଦେଖା ବୁଲି ଆସିଲା ।

"ସାର୍ ନମସ୍କାର । ଘୁଙ୍ଗାବାଲିରେ, ପାହାଡ଼ଶିଖରେ, ଅଳ୍ପ ପାଣିରେ ବ ନଳଡା ଗ୍ରୁଷ କରିହେବ । ମୁଁ ତାହା ପରୀକ୍ଷା କରି ଦେଖି ସାରିଛି । ଆମ ରାଜ୍ୟରେ ଝୋଟ ଆମଦାନ ବଢ଼ାଇବା ସକାଶେ ବର୍ତ୍ତମାନ ତ ମୁଁ ଆଗଠୁଁ ମଧ୍ୟ ଆହୁରି ବେଶି କାମରେ ଆସି ପାରିବ ଭାବୁଛି—"

"ନିଶ୍ଚୟ ନିଶ୍ଚୟ ଲାଗିପଡ଼ିବା ଉଚିତ । ବହୁତ ବାଲି ପଟା, ବାଲିବନ୍ତ, ଲଣ୍ଡା ପାହାଡ଼, ଭୁଚ୍ଛାଟାରେ ପଡ଼ିଛି । ଆପଣ ଯଦି ଯାଇ ସେଇମିତିଆ କିଛି ବାଛିନେଇ—"

"ସେଇଆ ଭାବୁଥିଲି ସାର୍, ଯଦି ମତେ ପୁନର୍ନିଯୁକ୍ତି କରାଇ ହୁଅନ୍ତା, ନ ହେଲେ ଉପଦେଷ୍ଟାହିସାବରେ ତେବେ—"

"ନିଶ୍ଚୟ ମୋର ମନେ ରହିଲା, ଆପଣ ଜାଣନ୍ତି ?

ଆପଣଙ୍କର ଏ ବଶିଷ୍ଟ ଗୁଣ, ଏ ଦକ୍ଷତା ଜାଣି ମୁଁ ଆପଣଙ୍କ ପାଇଁ ଆଗରୁ କେତେ କଥା ଭବ ସାରଛୁ, ଚେଷ୍ଟା କରୁଛୁ, ଆପଣ ମୋ ଉପରେ ବଶ୍ୱାସ ରଖନ୍ତୁ, ଆପଣ ଚାହିଁଲେ ମୁଁ ଆପଣଙ୍କୁ ଗ୍ୟାରେଣ୍ଟି ଲେଖିଦେଇ ପାରେ ଯେ—"

ଘୂର ବୂଲଲ ମଲ୍ଲିକ; କେତେ ଦୁଆର, କେତେ ଉପରକ, ଶାସକ, ନେତା, ମଙ୍ଗୁଆଳ । ସମସ୍ତେ ସଦୟ । ବାରମ୍ବାର ଲଗେ, ହୋଇଯିବ, ଏଇ ହେବା ଉପରେ, ହେଲପର ।

ଛଅମାସ ପରେ ବ ସେମିତ ଘେରବୂଲ । ଲୋକେ କାବା ହୋଇ କୁହାକୋହ ହୁଅନ୍ତ "ମିଷ୍ଟର ମଲ୍ଲିକ ଚାକଯାରୁ ଗଲେଣି ନା ଅଛନ୍ତ ? ସେତ ଦଶନ୍ତ ନାହିଁ ସଞ୍ଜବୁଡେ଼ ବାବାଜୀମାନଙ୍କ ପାଖେ ? ସକାଳେ ମୁଣିଧର ହାଟରେ ସେ ତ ବକ ନାହାନ୍ତ ଗାଡ଼ ? ଗ୍ରୁଡ଼ ନାହାନ୍ତ ପୋଷାକ ? ସବୁବେଳେ ଦଶନ୍ତ ଉତ୍ସାହରେ ପୂର୍ଣ୍ଣ, କାର୍ଯ୍ୟବ୍ୟସ୍ତ ।"

ବର୍ଷପରେ, ପୁଣି ଘେରବୁଲ, ପୁଣି ସେଇ ଉତ୍ତର ଟିକଏ ଭିନ୍ନେ—"ହଁ ହଁ, ମନେ ଅଛି; କନ୍ତୁ ଏପର୍ଯ୍ୟନ୍ତ ଦଶିନାହିଁ କଛି, ଚେଷ୍ଟା ଚାଲଛି ।"

ମଲ୍ଲିକ ଆଗପର ଖର୍ଚ୍ଚ କରୁଛି ମନଫୁର୍ତ୍ତିରେ, ମନ କହୁଛି ପୁଣି ନଯୁକ୍ତ ତ ହେବ । ବ୍ୟୟ ସଙ୍କୋଚ କର ମନ ସଙ୍କୁଚତ କରବା କ ଲୋଡ଼ା ?

ଦେଢ଼ବର୍ଷ ପରେ, ଉତ୍ତର ମିଳଲ ଆହୁର ଟିକଏ ଭିନେ—"ଆପଣ ଏଣେ କୁଆଡ଼େ ଅଇଲେ ମିଷ୍ଟର ମଲ୍ଲିକ ?···ଏଁ ? କୋଉଁକଥା ? ହଁ ହଁ, ମୋର ମନେ ଅଛି ଯେ, ନାଇଁ ଘଟି ନାହିଁ କଛି । କୌଣସି ବାଟ ମଟେ ଦଶିନାହିଁ । ଆପଣଙ୍କୁ ତ ଆଗରୁ କେତେଥର କହିଛି ଯେ, ମୁଁ

କେତେଟି କ ଲେଖିଛୁ, କହୁଛୁ ମଧ୍ୟ କେତେକଙ୍କୁ; ବେଳ ଲାଗିବ । ଆପଣ ଅପେକ୍ଷା କରନ୍ତୁ । ମୋତି ବିଶ୍ୱାସ ରଖିଥାନ୍ତୁ ତ ।"—

ତା'ପରେ ହଠାତ୍ କେତେବେଳେ ଧନେ ଜ୍ଞାନଭୂଷଣ ମଲ୍ଲିକ ଖୋଂଟବିଶାରଦର ଚେତନାସ୍ନାୟୁରେ କେଉଁଠି ଅତି ଶୀତୁଆ କମ୍ପକମ୍ପା ହୋଇ ଧାରଣାଟିଏ ଉଠିଲା, ଯେମିତି ନଗ୍ଣ୍ଠିଆ ଲମ୍ବା କାକର ରାତିର ସଙ୍କେତ ପରି ଓ୍ୱଁ ଶୀତଧନଆ ରୋଗିଣା ଜହ୍ନ—ଯେ କେହି ଆଉ ତାକୁ କାମ ଦେବେନାହିଁ, ସେ ଅଲୋଡ଼ା ।

ପାହାଡ଼ ପାଚେରୀରେ ବାଜି ଆପଣା ସ୍ୱର ପ୍ରତିଧ୍ୱନି ହୋଇ ଲେଉଟିଲା ପରି ଟହଳ ସହର ଆଡ଼କୁ ଚାହିଁ ମନ ଭିତରେ ଅକୁହା କୁହାଟ ଅସଂପୃକ୍ତ ଜନତାଙ୍କ ଆଡ଼ୁ ହାବୁକା ଖାଇ ଲେଉଟି ପଡ଼ ହାଉଳି ହେଲା,

"ତା ହେଲେ ?"

"ତୁମେ ଉତ୍ତର ଦେବ ନାହିଁ ?"

"ତୁମେ ଉତ୍ତର ଦେବ ନାହିଁ ?"

"ତୁମର ଖୋଂଟ ଦରକାର ନାହିଁ ?"

"ତୁମର ଖୋଂଟ ଦରକାର ନାହିଁ ?"

"ଉଃ !"

"ଉଃ !"

ତା' କଳ୍ପନାରେ ଅଶୁଣା ପ୍ରତିଧ୍ୱନିର ମରମଖେଞ୍ଚା ରୂପ ।

ସେ ତ ଚାହିଁଥିଲା ଆଉ ଏ ସଂସାରରେ—'ନ-ଥିବାକୁ' ; କିନ୍ତୁ ଦେଖୁଛୁ, ତା'ର ନିଜଟି ସବୁଯାକ ତା'ର ନୁହେଁ । ତା' ଅକ୍ତିଆରରେ ନାହିଁ । ସ୍ୱେ ପିଣ୍ଡଟା ବଞ୍ଚିବ, ସେ ଚାହୁଁ ନ ଚାହୁଁ । ଯେତେ—ଦିନଯାକେ ନ ମରନ୍ତି । ଛେଳିଟା ବଞ୍ଚିଥିବ, ନ ମରିବାଯାକେ, ଯେତେଥର ଛେଳି ଖାଉ ।

ସେ ଅନୁଭବ କଲା ତା' ଭିତରେ ଆତୁର ପଡ଼ୁଛି, ବଡ଼ ପାଟିରେ, ତା'ର ଶାନ୍ତି ଦରକାର ।

କିଏ ବତାଇଦେଲା ସେ ବାଟ ତା'ର ହେଉ ନାହିଁ; କିନ୍ତୁ ସେ ପୁଣି ଅଣ୍ଟାଭିଡ଼ ଲାଗି ପଡ଼ିଲା—ଝୋଟ ଉତ୍ପାଦନରେ ନୁହେଁ, ନାନା ଧର୍ମଗ୍ରନ୍ଥ ପଢ଼ିବାରେ । ଲାଗିଲା ସେତେବେଳେ, କାହିଁକି ଆଗରୁ ଏଥିରେ ବେଶି ବେଳ ନ ଦେଲା ! ସତେ ଅବା ପଦେ ପଦେକେ ନୂଆ ନୂଆ ଆବିଷ୍କାର । ମଜାଳ ଉପନ୍ୟାସ ପଢ଼ିଲାପରି ଯେତେବେଳେ ସେ ମନକୁ ଭୁଲାଇ ରଖି ସେହି ପଢ଼ାରେ ଲାଗି ରହିଲା, ସେତେବେଳଯାକେ ଅନ୍ୟ କଥା ଭାବି ପାରିଲା ନାହିଁ ବୋଲି କେତେ ସୁନ୍ଦର ଭୁଲା ଦୁନିଆଁରେ ବେଳତକ କଟେଇ ଦେଇ ଦେଲା; କିନ୍ତୁ ବହି ପଢ଼ାରୁ—ହେଉ ପଛେ ସେ ଧର୍ମପୁସ୍ତକ—ମୁଣ୍ଡ ଟେକିଲାମାତ୍ରେ ପୁଣି ତା'ର ଅଶାନ୍ତି, ଦୁଶ୍ଚିନ୍ତା । ଅଭାବ, କରଜ ଦାୟିତ୍ୱ, ପେନ୍‌ସନ ଟଙ୍କା ଅଳ୍ପବାଟ ଭେଟାଏ; ବାକି ସବୁ ପୁଙ୍ଗା ନାଉଁ । ନିଷ୍ଫଳ ଅଭିମାନ, ଏତେ କରି, ଏତେ ଜାଣି, ତଥାପି ଏ ଜଗତରେ ସେ ଅଲୋଡ଼ା । ଜପାମାଳା ଗଡ଼େଇଲା ପରି ସେହି ପଞ୍ଚାକ୍ଷର, 'କ'ଣ କରିବ' । ଦୁନିଆଁ ଖଡ଼େଇ ହେଉଛି—"ତିରିଶି ବର୍ଷ ସମୟ ପାଇଲୁ, କ'ଣଟା କଲୁ ? ଗ୍ରେଡ଼ରମାରି, ମିଛ, ଫିସାଦ—ଟଙ୍କୋଉଥିଲ, ନାକ ଟେକୁଥିଲୁ ପରା ? 'ଗୁଡ଼୍ ବୟ୍'— ଲେଖିଦବା ସାର୍ଟିଫିକେଟ, ଗୁଟିଏଥିବୁ । ଯେଉଁ ବୁଦ୍ଧିରେ ଦୁନିଆଁ ଗୁଳୁଛି ବୋଲି ମେଞ୍ଚଡ଼ କୁଆ ବି କହିଦେବ, ଟିପଚିହ୍ନ ଦେଲବାଲା ବି କହିଦେବ, ଯେଉଁ ବୁଦ୍ଧିର ପରାକଷ୍ଠା ଦେଖୁଥିଲୁ ସବୁଆଡ଼େ, ସେ ବୁଦ୍ଧି ଯଦି ତତେ ଢଶିଲା ଖରାପ ବୋଲି ତ ତୁ ବାୟା ନା ଆଉ କିଏ ?" କଷ୍ଟରେ ପଡ଼ି ସୁଦ୍ଧା ସେ ତା ନିଜ ମତିକୁ ଅମତ ବୋଲି ଭାବିପାରି ନାହିଁ ସତ, କିନ୍ତୁ ଦୁନିଆଁର ଛିଗୁଲେଇବା ବାଧୁଛି । ସେ ଦେଖିଛି,ଲୋକେ ସେମାନଙ୍କ ପାଖକୁ ଧାଇଁଛନ୍ତି, ତାଙ୍କର ସ୍ତୁତି ଗାଉଛନ୍ତି, ଯେଉଁମାନେ ଦେଇ ପାରନ୍ତି । କେଉଁଠୁ ଆଣିଲେ ଯେ ଦେଲେ ତା' କେହି ପଚାରେ ନାହିଁ ।

କେମିତି ମିଳି ପାରିବ ତାକୁ ଶାନ୍ତି ? ଉତ୍ତର ଖୋଜିବା ଉଦ୍ଦେଶ୍ୟରେ ପୁଣି ସେହି ଧର୍ମପୁସ୍ତକମାନ ଆଉଣ୍ଡିଲା ମାଦେ ସେ ମୁହଁ ନେଫେଡ଼ି ଦେଲା । ସେମାନେ ସମସ୍ତେ କହୁଛନ୍ତି, ଆଗ ନିଜ ମନକୁ ଶାନ୍ତ ଦିଅ, ମନ ଶାନ୍ତ ହୋଇସାରିଲେ ଏଥିରେ ଥିବା ଉପଦେଶଯାକ ଅନୁସରଣ କରିପାରିବ । ମନକୁ ଟାଣ କରି ଧରି, ସେଇଟା ଅମଣିଆ ବଳଦ, ଯେଣେ ତେଣେ ଧାଏଁ । ସବୁ କାମନା ଛାଡ଼ । ନମିଳୁ କିଛି, ପଡ଼ୁ ଯେତେ ବିପଦ, ଡରନା, ଦୁଃଖ କରନା, ଯେତିକ କାମ କରି ହେଉଛି, ସେତିକ କରୁଥା, ସବୁ କାମ ଭଗବାନ କରାଉଛନ୍ତି, ସବୁ ଫଳ ସେ ଦଉଛନ୍ତି ଏଇଆ ଭାବୁଥା । ଅଭ୍ୟାସ କଲେ ଭାବ ହେବ ।' ସେତ ଶାନ୍ତି ପାଉନାହିଁ ବୋଲି ଶାନ୍ତି ଖୋଜୁଛି, ନିଜେ ତା' ମନ, ନାନା କାମନାରେ ଛଟପଟ ବୋଲି ସେଥିରୁ ବର୍ତ୍ତିବା ଉପାୟ ଖୋଜୁଛି, ନିଜେ ପୁଣି ଆଗ ସେସବୁ ଛାଡ଼ି ପାରିବ କେମିତି ? ସେହି ଉପାୟ ତ ସେ ଖୋଜୁଛି । ଅଭ୍ୟାସ—କି ଅଭ୍ୟାସ ? କିଏ ବତେଇବ କେମିତି ହୁଏ ? ଆଖି ବୁଜି ଧ୍ୟାନ କଲେ ମନେ ପଡ଼େ ସବୁ ଜଞ୍ଜାଳ ଓ କାମନା ।

କିଛି ସମାଧାନ ହେଲାନାହିଁ ।

କ୍ରମେ ସେ ପଢ଼ାକୁ ଯିବା ଛାଡ଼ିଦେଲା । ଖବର କାଗଜ ନିତି ଆସେ ଗଦା ହୁଏ, ଚୁଲି ଜାଳ ହୁଏ । ତା ଷ୍ଟୋର ଅନୁଶୀଳନର ସାଇତା ଖାତା ଭଡ଼ା ଭଡ଼ା ଉପରେ ଧୂଳି ଜମିଲା, ଭିତରେ ଚୁଟିଆ ମୂଷା କାଟି କାଟି ଘର କଲା, ଛୁଆ କଲା ।

ବସି ରହିଥାଏ । କେତେବେଳେ କ'ଣ ଟିକିଏ ପଢ଼େ, କେତେବେଳେ ତା' ପ୍ରିୟ ଷ୍ଟୋର ଗୃଷ କଥା ଭାବେ, ପୁଣି ମନ୍ଦିରୁ ସେ ଭାବନା ଉଭେଇ ଯାଏ, ସେ ବକାହୋଇ ବସିଥାଏ, ଯେପରି କିଏ ଆସିବ, କି କ'ଣ ଘଟିବ ବୋଲି

ଅପେକ୍ଷା କରିଛି । କେହି ଆସୁନାହାଁନ୍ତି, କିଛି ଘଟୁନାହିଁ; କିନ୍ତୁ ଦିନ ସରି ଯାଉଛି । ଆଉ ମାସ, ବାର, ତାରିଖ କିଛି ମନେ ରହୁନାହିଁ ।

ଖାଲି ଗୁଡ଼ାଏଁକଣା ଉଠିପଡ଼େ ପେନ୍‌ସନ୍ ଆଣିବାକୁ ଯିବାଦିନ । ଚିଡ଼ିଆ ଟ୍ରେଜେରି, ଭଙ୍ଗା ଦଦରା ପୁରୁଣା ନାହାମାନଙ୍କ ଗହଳି ଭିତରେ ଠେଲି ଠେଲି କେତେ ଧକ୍‌କା ପେଲା ଖାଇ ସେହି କେତେ ଘଣ୍ଟା ସେ ଅନୁଭବ କରେ ସେ ଜେ: ବ: ମଲ୍ଲିକ୍, ହେଉ ପଛେ ଗୁଡ଼ାଏ ଶୁଖିଲା ଫମ୍ପା ଶବ୍ଦ ।

ଘର ତା' ସୁଖେ ଚାଲିଥାଏ, ସବୁ ସେହି ଟିମାବୋଉ ଲାଗି । ସକାଳୁ ରାତି ଅଧଯାକେ ସେ କାମରେ ଲାଗିଥାନ୍ତି । ଏ ଘରେ ପାଦ ଦେଲାଦିନୁଁ ସେଇଆ ସେ ଆବୋରି ନେଇଥିଲେ ।

ମଲ୍ଲିକ୍ ଦେଖେ ସେହି ଅଖାତକୁ । ତା' ନଜର ସେତେବେଳର ସେ ଚେହେରା ! ଆଃ ! ସତେ ଯେମିତି ଆଖଡ଼ାଘରର ମାଲ, କୁନ୍ଦାଲା ପରି ଦେହ, ଡେଙ୍ଗା ଗୋରା ତକତକ । ଲମ୍ବାଳିଆ ବଡ଼ମୁହଁ, ଶୁଆଥଣ୍ଟିଆ ନାକ । ଆଉ ତା'ପାଖରେ ଟିମାବୋଉ,ସେତେବେଳେ ବିଦ୍ୟୁଲତା—ଚକ୍‌କଣ କଳା ଏଡ଼େ ଓସାର ଯେ, ଡେଙ୍ଗୀ ହେଲେ ସୁଦ୍ଧା ଗେଡ଼ି ପରି ଦିଶନ୍ତି, ମୁହଁଟି ସାଧାରଣ, ଚେକା ମାଉଁସିଆ, ସାନ ସାନ ଆଖି, ସାନ ଚେପ୍‌ଟା ନାକଟି, ତଳ ଓଠଟି ଫୁଲା ପଡ଼ିଲା ପରି ମୋଟ ହୋଇ ଆଗକୁ ବାହାରିଥାଏ, ଅନେକ ସମୟରେ ଟିକଏ ଓହଳି ପଡ଼ିଥାଏ, ଦାନ୍ତ ଦିଶେ । ମୁଣ୍ଡ ବାଳ ଗହଳି, ଚେଡ଼ଉଚେଡ଼ଉକା, ସେ ହେଲେ ଟିମା ବୋଉ, ଖିମା ବୋଉ, ବେଙ୍ଗା, ସୁନା, ଜଗା, ଖଗା, ବଣୀ, ରଣୀ, ବଗା ଏମିତି ଆଠଟି ସନ୍ତାନଙ୍କ ବୋଉ । ସ୍ୱାମୀ ପେନ୍‌ସନ୍ ନେବା ଆଗରୁ ଟିମା ବିଭା ହୋଇ ସପରିବାର ରାଜସ୍ଥାନରେ, ଖିମା ବିଭା ହୋଇ ସପରିବାର କେରଳରେ, ବେଙ୍ଗା ବିଭାହୋଇ ସ୍ୱାମୀ ସଙ୍ଗରେ ଗୌହାଟୀରେ, ସୁନା ବିଭାହୋଇ ବମ୍ବେଇରେ, ଆଉ ଗୁଡ଼ାଏଟି ବିଭା ହୋଇ ନ ଥାନ୍ତି କି ତାଙ୍କ ପାଠପଢ଼ା ସରି ନଥାଏ । ଟିମା, ଖିମା ଉଚ୍ଚ

ଶିକ୍ଷିତ ସତ; କିନ୍ତୁ ମହଙ୍ଗା କାଳ, ବିଦେଶରେ ପରିବାର ଘେନି ରହଣୀ, ବର୍ଷକୁ ଥରେ ଦି'ଥର ଘରକୁ ଆସିବାରେ ବହୁତ ଯାଏ, ତା' ଉପରେ ମାସକୁ ମାସ ନିୟମିତ ଭାବେ ସାହାଯ୍ୟ କରିବାକୁ ଟଙ୍କା ପଠାଇ ହୁଏ ନାହିଁ । ମଲ୍ଲିକ ଧର୍ମପୁସ୍ତକ ପଢ଼େ, ଆଉ ମନଦୁଃଖ କରୁଥାଏ । ଟିମାବୋଉ କାମ କରୁ କରୁ ବୁଝାନ୍ତି ।

"ଆଗୋ ଯାହା ହେଇ ପାରିବ ହେଇ ପାରିବ, ଯାହା ନ ହେଇ ପାରିବ ନାହିଁ, ତୁମେ ଏତେ ଚିନ୍ତା କରୁଚ କାହିଁକି ?"

"କେଉଁଠୁ ଆସିବ ? କେମିତି ଚଳିବା ?"

"ଚଳେଇବାବାଲା ଚଳେଇବ, ଆଉ କିଏ ?" ଟିମାବୋଉ ମୁଣ୍ଡରେ ଆଉ ସେ ବାଳ ନାହିଁ; ଖାଲି ପଛଆଡ଼େ ଝୋଟ ପରି ପୁଳିଏ, ଆଉ ସବୁ ଚନ୍ଦା । ଦାନ୍ତ ଅଧେ ଖାଲି । ଚମଧୋକଡ଼ା ହେଲଣି, ଓସାର ହାଡ଼ରୁ ଶିଥିଳ ହୋଇ ମାଂସପେଶୀ ଝୁଲୁଛି । ମୁହଁ ଶୁଖିଯାଇଛି । ଆଖି ପଶି ଗଲଣି । କିନ୍ତୁ ଚଳ ପ୍ରଚଳ ହେବାକୁ, ସବୁବେଳେ କାମ କରିବାକୁ, ସବୁ ଦାୟିତ୍ୱ ମୁଣ୍ଡକୁ ନେବାକୁ କେତେ ଶକ୍ତି ତାଙ୍କଠି ! ସ୍ୱାମୀ ସତେକି ତାଙ୍କର ସବୁ ସନ୍ତାନଙ୍କଠୁଁ ବଳି, ସବୁଠୁ ନିପାରିଲା, ସବୁବେଳେ ଖୋଜୁଥାନ୍ତି ତାଙ୍କର ଆଶ୍ରା, ତାଙ୍କରଠୁଁ ସେବା, ଯତ୍ନ, ଉପଦେଶ, ସାନ୍ତ୍ୱନା ନହେଲେ ସେ ଅଚଳ ।

ବେଳେ ବେଳେ ଟିମାବୋଉର ମୁଣ୍ଡ ବୁଲେଇଦିଏ, ସେ ଟିକିଏ ଶୋଇପଡ଼େ, ବେଳେ ବେଳେ ତା' ଜ୍ଞାନ କ'ଣ ହୋଇଯାଏ । ତା ଆଣ୍ଠୁ ଗଣ୍ଠି ଦରଜ ହୁଏ, ଦେହ ଘୋଳା ବିନ୍ଧା ହୁଏ, କିନ୍ତୁ ତା'ର ଯେତେ ଯାହା ହୁଏ, ସେ ତାକୁ ଦେହରେ ମାରେ ।

ଟିମାବୋଉର ଦେହ କଷ୍ଟ ହେଲେ, ମଲ୍ଲିକ୍ ଆଖଙ୍କାରେ ଛଟପଟ ହୁଏ । ପୁଣି ତା' ବ ଭୁଲଯାଏ । ଟିମାବୋଉ ତା'ର ଚହ୍ଳା ପରିବେଷ୍ଟନୀ ଭିତରେ ଗୋଟିଏ ମାତ୍ର ରହିଥିବା ଉପାଦାନ, ସେ ନଜେ ଥିବାଯାକେ ଟିମାବୋଉ ନଷ୍ଟପ୍ରୁ ଅଛୁ । ଡାକଲେ ଓ କରେ, କରିବ । କେତେଥର ରାତ୍ତିରେ ସେ ଶୋଇଥିଲବେଳେ ନଦ ପରିବର୍ତ୍ତେ ଆଖି ଆଗରେ ଦଶେ ଗୋଟାଏ ଭୂତପରି—ସେ ତା'ର ନ ଥିବ ପୁଞ୍ଜି ପାଣ୍ଠି ର ହିସାବ, ଛୁଣ୍ଡି ନ ଥିବା କରଜ, ଆବଶ୍ୟକ ଗୁଡ଼ାକର ଟଙ୍କା ମାଧ୍ୟମରେ ସଂଖ୍ୟା-ରୂପ । ମାଡ଼ ବସୁଛୁ, ଗୁଡ଼ିରେ ମାଡ଼ ବସୁଛୁ, ତଣ୍ଟି ଶୁଖିଯାଉଛୁ, ମୁଣ୍ଡ ଘାଁ ଘାଁ । ସେତେବେଳେ ସେ ଡାକେ—"ଟିମାବୋଉ !"

ଯେମିତ ବହୁତ ପିଲାଦିନରୁ ସ୍ମୃତିଟାଏ, ବାରମ୍ବାର ଆସେ । ଆକାଶ ତଳେ ଖୋଲା ଦୁଆରେ ସପ ଉପରେ ସେମାନେ ସେ ତା' ଭାଇମାନେ, ଭଉଣୀମାନେ, ବୋଉ, ତା' ବାପା । ଜହ୍ନରାତି, ଖରାଦିନ । ରାତ୍ତି ଅଧରେ ନଦ ଭାଙ୍ଗିଯାଏ—ଦେଖେ ସମସ୍ତେ ନଘୋଡ଼ ନଦରେ । ଲାଗେ, ସବୁ ଯେମିତ ଗୋଟାଏ ଅଛୁଣ୍ଡା ପଡ଼ିଆ, ସେଠି କେହି ନାହାନ୍ତି, ଏକା ସେ । ସେହି ଏକୁଟିଆ 'ସେ ନଜେ' ଗୋଟାଏ କାଲ୍ପନିକ ଭୟର ବୋଧ ହୋଇ ତାକୁ ଡରାଏ, ସେ ଠିଆ ହୋଇ ପଡ଼ିବାକୁ ବ ଡରେ, ଘୁଷୁରି ଘୁଷୁରି ଯାଇ ତା' ବୋଉକୁ କୁଣ୍ଢେଇ ପକାଏ, ହାଉ ହାଉ ସୁଁ ସୁଁ ହୋଇ କାନ୍ଦି କାନ୍ଦି କହେ ।

"ବୋଉ, ଡର ମାଡ଼ୁଚ ।"

ଆଉ ବୋଉ ତାକୁ କୁଣ୍ଢେଇ ଧରି ଥାପୁଡ଼େଇ ନଦ ମଳମଳ ହୋଇ କହେ—ନାଇଁ-ନାଇଁ-ନାଇଁ ।"

"ଟିମାବୋଉ, ଶୋଇଲ କ ? କେମିତ ଏ ଅଡ଼ୁଆ ସବୁ ତୁଟିବ ? କାହୁଁ ଟଙ୍କା ଆସିବ ?"

"ସ୍ଥିର ହୋଇ ଶୋଇପଡ଼ । ବଳେ ହବ ।"

"କୋଉଠୁ ?"

"ମଣିଷ ତା' କହି ପାରିବ ? ଠାକୁରେ କରିବେ । ସବୁ ହବ ।"

ସେହି ଟିମାବୋଉ କହୁଥିଲା, "ଘରଟାରେ ଖାଲି କାହିଁକି ବସି ରହିଚ ? ବୁଲି ଯାଉନା ? ଯାଉନା ଲୋକଙ୍କ ସାଙ୍ଗରେ କଥାଭାଷା ହେବ ?"

"କି କଥା ?"

"କିଛି ନାହିଁ, ଖୁସି ଗପ ।" ମଲ୍ଲିକ୍ ହସେ । ତା' ବି ସେ ପରଖି ଦେଖିଛି । କାହା ବାହାଘରର ଭୋଜି, କେଉଁ ସଭା, ଅନ୍ୟ କେଉଁ ଲୋକ ଗହଳି, ସେଠିକି ସେ ଯାଇ ଅନୁଭବ କରିଛି ସତେକି ସେ ଅନ୍ୟମାନଙ୍କ ଆଗରେ ଅଦୃଶ୍ୟ ହୋଇ ଯାଉଛି । ଯାହାଙ୍କୁ ସେ ଚିହ୍ନିଥିଲା, ସେମାନେ ତାରି ପାଖରେ ବସିଥିବା ଅନ୍ୟ ଲୋକଙ୍କ ସଙ୍ଗେ ଖୁବ୍ ଉତ୍ସାହରେ କଥାଭାଷା ହୋଇଛନ୍ତି, ତା' ସଙ୍ଗରେ ନୁହେଁ । କେତେବେଳ ପରେ ସେ ନିଘାକଲା ବେଳକୁ ଦେଖିଛି ସେ ବସିଛି ସେଠି ଏକୁଟିଆ, ଅନ୍ୟମାନେ ବଗ୍ଗବଗ୍ଗ ହୋଇ ଦୂରରେ ବସି ଗପ କରୁଛନ୍ତି ।

କେତେ ଶୀଘ୍ର ଦେହମସ୍ତ ପିଣ୍ଡ ତା'ର ଆପଣା ବ୍ୟବସ୍ଥା ସମ୍ପୂର୍ଣ୍ଣ କରିଦେଲା । ତା'ର ଶୋଇବା ସମୟ, ନିଦରୁ ଉଠିବା ସମୟ, ଖାଇବା ସମୟ, ସବୁ ଶାନ୍ତ ଆପେ ବଦଳିଗଲା, ନିଜକୁ ସେ ନିଜେ ଜେଲ୍‌ଖାନାରେ କଇଦୀ କଲା ।

"ମୋ ସଂସାରର—ମୋ ନିଜର—ଯେତେ ଯେତେ ସମସ୍ୟା ଭାବ ହେଉଛି, ହୋଇପାରିବ ତହିଁରୁ ଗୋଟିକର ହେଲେ ସମାଧାନ ମୋ ଦେଇ ?" ସେ ଆବା କାବା ହୋଇ ବାରମ୍ବାର ନିଜକୁ ପଚାରେ, ଆଉ

ସମସ୍ୟାଗୁଡ଼ିକ ଭୁଲିଯାଏ । ତା'ପରେ କୁଆଡ଼ୁ କେମିତି ଧନେ ଜଗା ପାଠ ସାରି ରହିଲା ହରଦ୍ୱାରରେ, ଖଗା ଭିଲାଇରେ, ପଛେ ବଗା ଭିଲାଇରେ, ବଣି ବଧୂ ହୋଇ ସ୍ୱାମୀ ସଙ୍ଗରେ ମାଲକାନଗିରିରେ ରହିଲା, ରଣୀର ବି ହଠାତ୍ ବରଘର ଜୁଟିଗଲା; ସପ୍ତମଙ୍ଗଳା ବାସିଦିନ ସ୍ୱାମୀ ସଙ୍ଗେ ସେ ଚାଲିଗଲା ସ୍ୱାମୀର କାର୍ଯ୍ୟସ୍ଥଳୀକୁ କାଳିଫର୍ଣ୍ଣିଆ ।

ଘରେ ସେ ଆଉ ଟିମାବୋଉ । ସବୁ ପିଲା ଉଚ୍ଚଶିକ୍ଷା ପାଇଲେ । ପୁଅମାନେ ଯେଉଁମାନେ ଆଧୁନିକ ବିଜ୍ଞାନପ୍ରାପ୍ତ ନାନା ବିଷୟରେ ଇଞ୍ଜିନିୟର, ସମସ୍ତେ ରୋଜଗାରିଆ, ଝିଅମାନେ ଉଚ୍ଚଶିକ୍ଷିତା, କାହାରି ପାଇଁ ବାପ ମା'ଙ୍କୁ ଧନ୍ଦ ହେବାକୁ ନାହିଁ । ଏଥର ତ ବୋଧହୁଏ ଖୁସୀ ହେବା ଦରକାର ?

କିନ୍ତୁ କାହିଁ ଖୁସୀ ? ଓଃ ! କେଡ଼େ ନିଘ୍ଟିଆ ! କୁଆଡ଼େ ସବୁ ଗଲେରେ ପିଲାଟିମାନେ ।

ନିରାଶ୍ରୟ ଅସହାୟ ଦୁର୍ବଳ ବୁଢ଼ାଟିଏ ।

ଟିମା ବୋଉ ଯେମିତି ଥିଲେ ସେମିତି; ସବୁବେଳେ କାର୍ଯ୍ୟବ୍ୟସ୍ତ ଖାଲି ବସିବାକୁ ବେଳନାହିଁ । ମଲ୍ଲିକ ଅନାଇଁ ଥାଏ ତା'ର ସେହି ଦମ୍ଭ ଆଶ୍ରୟକୁ—ସେ ଟିମାବୋଉ ।

"ବାପା ଆସ, ବୋଉ ଭୁ ଆ !" ଚଠି ଆସେ ।

"କୁଆଡ଼େ ଯିବ ଟିମାବୋଉକୁ ଏଠି ଛାଡ଼ି ?" ମଲ୍ଲିକ୍ କହେ ।

"ମୁଁ ଗଲେ ତମ ବାପା ଏଠି ଏକା ସମ୍ଭାଳି ହୋଇ ରହିବେ ? ଶୁଣୁଚ ଏ ଗୁଡ଼ାଙ୍କ କଥା । ସବୁବେଳେ ଖାଲି ବାପା, ବୋଉ । ପାଠଶାଠ ପଢ଼ିଲେ କ'ଣ ହେବ, ଭାତ ଖାଇ ଭଲକରି ଆଞ୍ଚୋଇ ଜାଣିନାହାନ୍ତି ପରା !" ଟିମାବୋଉ ଗର୍ବରେ କହନ୍ତି ।

କିନ୍ତୁ ପିଲାଏ ଗଲା ପରେ ଟିମାବୋଉଙ୍କ ମୁହଁର ଠାଣି ବଡ଼ ଚଞ୍ଚଳ ବଦଳି ଯାଇଥିଲା । ଯେମିତି ତାଙ୍କୁ ବ ଲଗୁଛି ଅଲୋଡ଼ା ଅଲୋଡ଼ା । ସେ ସ୍ୱାମୀଙ୍କ ଉପରେ ବେଳେ ବେଳେ ଚିଡ଼ୁଲେଣି । ବାରମ୍ବାର ଗୋଟାଏ ଅଭିଯୋଗ—"ଯେତେ କହିଲି ଘର ଗୃହ ବଖର୍ା ଆଉ କର, ହେଲାନାହିଁ । ପିଲାଏ କେତେବେଳେ କେମିତି ତ ରହନ୍ତେ !"

"ହଃ । ଆଉଚମ୍ପ ନା ରହୁଛନ୍ତି । ଦାଣ୍ଡରେ ଏ ବଖରାଏ କଡ଼କାଠ ଉପରେ କୋଠା ଗୁହ, ପିଠିଆଡ଼େ ଗୃହବଖରା-ଟାଇଲଘର । ଜୀବନଯାକର କମେଇଁ ଏତିକି । ଆଗକୁ ହେଇ ସେ ଦ'ଘର ଗୁଡ଼ କଂସେଇଖାନା, ପଛକୁ ଠିକ୍ ଦକ୍ଷିଣା ପବନର ବାଟ ଆବୋର ସର୍ବସାଧାରଣଙ୍କ ଦୋମହଲା ପାଇଖାନା । ଏ ସ୍ଥଳ ତ ଗୁଡ଼ । ଏଇଠିକି ତମ ପୁଅଟିମାନେ—କିଏ କେମିକେଲ୍, କିଏ ମେକାନିକେଲ୍, କିଏ ଇଲେକ୍‌ଟ୍ରିକେଲ୍ ଇଞ୍ଜିନିଅର୍- ଗୁଡ଼ିକ, "ତୁମ ଜୋଇଁଟିମାନେ—କିଏ ଜିଓଫିଜିସିଷ୍ଟ, କିଏ ଆଟମିକ୍ ଏନର୍ଜିଫିଜିସିଷ୍ଟ, କିଏ ମେଟାଲର୍ଜିସିଷ୍ଟ—ଏମାନେ ଛୁଟି କଟେଇବା ପାଇଁ ନ ଆସିଲେ ଚଳିବ ?"

ଆରେ ବାବୁ ଆଉ ତ ଜାଗା ରହିଚ—

"ଉପାୟ କାହିଁ ?"

"ମୁଁ କହିବ ? ତୁମେ ନିଜେ କିଛି କରିପାରୁ ନାହଁ ?" ସେ ଅଧୀର ହୋଇ କାନ୍ଦି ପକାନ୍ତି । ସେତେବେଳେ ମଲ୍ଲିକ୍ ଅନୁଭବ କରେ ଯେ ସେ ସ୍ୱାମୀ, ଏଇ କଥା ଆତ୍ମବିଶ୍ୱାସ ସଙ୍ଗେ ସଙ୍ଗେ ଆସେ ମାନସିକ ଯନ୍ତ୍ରଣା, କାନ୍ଦ କାନ୍ଦ ହୋଇ କହେ, "ତୁମେ କଣ ଜାଣନା ଯେ ମତେ କହୁଚ ? ମୁଁ କ'ଣ ତୁମକୁ ଲୁଚେଇ କୋଉଠି କ'ଣ ରଖିଛି ?"

"ପୋଡ଼ଯାଉ, ଘରପୋଡ଼ଯାଉ, ଜଳଯାଉ ଟଙ୍କା, ପୋଡ଼ଯାଏ ମୁଁ । ମୁଁ ତୁମକୁ କଣ କହିଲି କି ?"

ମଲ୍ଲିକ ମୁହଁମାଡ଼ ଶୋଇପଡ଼େ । ସ୍ତ୍ରୀ ଆଗେ ତ ଏପରି ହେଉ ନ ଥିଲି । ତାର ଗୁଡ଼ିଏ ଥରେ । ସେ ନିଜ ଥିବା-ପଣ ଅନୁଭବ କରେ ତା' ଯନ୍ତ୍ରଣା ଯୋଗୁଁ । ପୁଣି ଝିମାବୋଉ ଭୁଲି ଯାଆନ୍ତି କେବେ ସେ ରାଗିଥିଲେ । ସେ ବି ତା ଯନ୍ତ୍ରଣା ପାସୋରେ । ତା ସହିତ ପାସୋରେ ତା ଥିବା-ପଣ, ତା'ର ଫାଙ୍କା ଅଗରେ ଗୋଟାଏ ଫାଙ୍କା ଦୁନିଆଁ, ତାହାର ଭିତରେ ସେ କେଉଁଠି ହେଲେ ତା' ଗୁଡ଼ି ଧୁକ୍ ଧୁକ୍ ଅନୁଭବ କରେନାହିଁ ।

ଆଉ ସେଉଠୁ ସେଦିନ ।

ସବୁଥର ପରି ରାତିରେ ସେମାନେ ଏକା ବିଛଣାରେ ହିଁ ଶୋଇ-ଥିଲେ, ଅଲଗା ଅଲଗା । ସେ ଉଠିଲାବେଳକୁ ଅଗଣାରେ ବହୁତ ଖରା । ସେ କବାଟ ଆଉଜେଇ ଦେଇ ପଦାକୁ ଗଲା । ଦୁଇଘଣ୍ଟା ଉତ୍ତାରୁ ବି ଝିମା-ବୋଉ ଉଠି ନ ଥିଲା । ଆଉ କିଛି ବେଳ ଗଲା । ତା'ର ବାସି ପାନଟିକ ସରିଲାଣି, ଆହୁରି ଦରକାର ।

"ହେ ଝିମାବୋଉ ! ଆରେ ଉଠ ହୋ—ଦିନ ଯେ ହେଲାଣି ଆସି —ରହିଥା ଦେଖେଁ—ଆରେ ଦଶଟା—ଆଜି କେତେବେଳେ ଉଠିବ ହୋ ? ହୋ···ହୋ ଝିମାବୋଉ !"

ତା'ପରେ ମଲ୍ଲିକଙ୍କ ନିଘା ପଡ଼ିଲା—କାହା ମୁହଁ ଯେ ? କାହା ହାତ ଗୋଡ଼ ? ସବୁ ଥଣ୍ଡା ହୋଇଯାଇଛି । ଆଉ······

ଆଉ ସେ ମନେ ପକାଏ ନାହିଁ ।

ତା'ପରେ କଣ ସବୁ ହେଲା ? ସେ ଭୁଲିଯାଇଛି ।

ଗୃହଁକର ଯେତେବେଳେ ମନେପଡ଼େ; ମୁଣ୍ଡ ଝାଇଁ ଝାଇଁ କରି ଏକାଥରକେ ମାଡ଼ିଆସେ ଯନ୍ତ୍ରଣା—ସେ ଭାବେ କେମିତି ସେ ବଞ୍ଚି ରହିଛି ?

ପୁଣି ସବୁ ଭୁଲିଯାଏ ।

ମନେପଡ଼େ, ଯେତେବେଳେ ପୁଅମାନେ ତାକୁ ଏଠୁ ନେଇ ଯିବାକୁ ଚେଷ୍ଟା କରିଥିଲେ—

"ଗୃଲ ବାପା, ଆଉ କାହିଁକି ?"

"ନାଇଁ-ନାଇଁ-ନାଇଁ" ଆଖିବାଟେ ନଆଁ ଗୁଡି ଗୁଡି ସେ ଚିତ୍କାର କରି ଉଠିଥିଲା । ସେହି ତୀବ୍ର ପ୍ରତିବାଦ ହିଁ ତା'ର ଥିବାପଣର ପ୍ରକାଶ ଓ ପ୍ରମାଣ, ସେତିକବେଳେ ସେ ପରିସ୍ଥିତି ପ୍ରତି ଚେଇଁ ଉଠିଥିଲା, ଆପଣାର ମୌଳିକ ମୂର୍ଖତା, ବିରୂପ ବିଶିଷ୍ଟତା ଯେମିତି ସ୍ୱତନ୍ତ୍ର ହୋଇ ସେମାନଙ୍କ ଆଗରେ ଠିଆ ହୋଇଥିଲା, ହେଉନ୍ତୁ ପୁଅ, ବୋହୂ, ଝିଅ, ଜୋଇଁମାନେ ବିବ୍ରତ, ଦୁଃଖିତ, ବିରକ୍ତ—ସେ ଅଛି; ସେ ସେ; ସେ କାହା ମତ ଆଗରେ କୁଣ୍ଠାକାଠି ନୁହେଁ କି ଜାଳେଣୀକାଠ ନୁହେଁ ।

କ'ଣ ବା କରନ୍ତେ ସେମାନେ !

ବୁଢ଼ା ଗୃକର ରଘୁକୁ ଉତ୍ସାହ ଦେଲେ, ପଇସା ଦେଲେ, ଠେକା-ଠେକି କରି କେତେ କହିଲେ । ତା'ପରେ ଗଲେଗୃଲି । ଶୂନ୍‌ଶାନ୍ ।

"ବିଦୁଲି ! ବିଦ୍ୟୁଲ୍ଲତା ! ଚିମା ବୋଉ ! କୁଆଡ଼େ ଗଲୁ ହୋ !"

"ମରିବି । ମୁହୂର୍ତ୍ତେ ଆଉ ବଞ୍ଚି ରହି ପାରିବି ନାହିଁ ।"

ମନେ ମନେ କାନ୍ଦେ ।

ସତେ ସତେ କାନ୍ଦେ ।

କେତେବେଳେ ହଠାତ୍ ଲାଗେ, ପେଟରେ ଭୋକ ଜଳୁଛି, ଅଧୀର ହୋଇ ଚିତ୍କାର କରେ, "ଶୋଇ ପଡ଼ିଲୁକି ରଘୁ ? ଦିନ ଦି'ଟା ବାଜିଲାଣି ଯେ।" ହୁଏତ ବାରଟା ବାଜୁଛି କିମ୍ବା ତିନିଟା, କିନ୍ତୁ ସବୁବେଳେ ସେ କହେ "ଦି'ଟା ବାଜୁଛି"। ଗାଉଁ ଗାଉଁ କରି ଗିଳୁ ଗିଳୁ ତଣ୍ଟିରେ ଲାଗେ। କିଏ ମନେ ପକାଉଚି ?—"ହଇଁ ଆଉ ଟିକିଏ ବାଇଗଣ ପୋଡ଼ା ? ନାଅ ମ, ମୋ ପାଇଁ ବହୁତ ଅଛି ?"

ଖାଇ ସାରିଲେ ସେ ଟିମାବୋଉ କଥା ଭାବିବ ଏଇଆ ମନସ୍ଥ କରେ।

ଖାଇ ସାରି ଶୋଇ ପଡ଼େ।

ଉଠେ, ମନେ ପଡ଼େ, ସେ ଟିମାବୋଉ କଥା ଭାବିବ। ଚେଷ୍ଟା କରେ। ହଠାତ୍ ଅନୁଭବ କରେ, ଏ ଖାଲି ପେଟଖେଳା।

ଭାବେ ନାହିଁ। ଖାଲି କଳଟାଏ। ବେଳ ହେଲେ ଘୁଏଁ ଘୂରିବ।

ଏକଷଠି ବର୍ଷର ସ୍ମୃତି, କେତେବେଳେ କେଉଁଟା ଭାସି ଉଠେ ଅବିକଳ ସେହିପରି ନୁହେଁ, କେତେଟି କେତେ ଅଦଳ ବଦଳ, ଯେମିତି ଖଣ୍ଡେ ପାଣିଚିଆ ଅଧେ ରଙ୍ଗ ଉଡ଼ି ଯାଇଥିବା ବିବର୍ଣ୍ଣ ହୋଇଥିବା ପୁରୁଣା ଛବି, ମଝିରେ କେତେ ଆକାର ଆକୃତିର ପୋକଖିଆ କଣା, କେତେ ଫାଟ, କେତେ ଚିରା, ଆଉ କେତେ ରଙ୍ଗକୁ ରଙ୍ଗ ଛବିକୁ ଛବି ଗୋଳିଆ ଫେଣ୍ଟା, ଯାହା ମୁଣ୍ଡକୁ ତା ଲାଞ୍ଜ,—ଆଉ କେଉଁଟା କାହା ଉପରେ ଯାଇଛି ଚଢ଼ି, ଯେମିତି ଯୋଡ଼ାଏ ରେଳଗାଡ଼ି ଧକ୍କା ଲାଗିଛି; କିନ୍ତୁ ଦେଖିଲାବେଳେ ମାଲିକକୁ ଲାଗୁଥାଏ ସବୁ ସତ, ତା'ର ଜୀବନର ଅନୁଭୂତି; ଅଥଚ ଆଶ୍ଚର୍ଯ୍ୟ ନିର୍ଲିପ୍ତ ଲାଗେ ତାକୁ, ଯେମିତି ସେ ଖାଲି ଦେଖଣାହାରି। ଯେମିତି

ରେଡ଼ିଓରେ ସେ କେବେ ବକ୍ତୃତା ଦେଇ ସାରି ରେଡ଼ିଓରେ ତାକୁ ଶୁଣୁଛି ଆଉ ଜାବା ହେଉଛି, କାହା ସ୍ୱର ଯେ ? ଭାଷା ଓ ଭାବ ତ ମୋର ପରି ଲାଗୁଛି, ବିଷୟ ତ ମୋର ପ୍ରିୟ ବିଷୟ, ଶ୍ରେଷ୍ଠର ଅଭ୍ୟୁଦୟ ।

ବେଳେ ବେଳେ ସେ ଲିପ୍ତ ହୋଇ ପଡ଼େ; କିନ୍ତୁ ଆର ମୁହୂର୍ତ୍ତରେ ପୁଣି ଦଂଶନର ଯନ୍ତ୍ରଣା, ଯେ ଯାହା ଥିଲି ତା' ନାହିଁ । ସେହି ଦଂଶନର ଜ୍ୱାଳାରେ ବାହାରେ ପଦେ କଥା—"ଓଃ ! ଟିମାବୋଉ ।"

ଅଥଚ କଳକାମଳରେ ଠିକ୍—ତା' ନିତ୍ୟକର୍ମ, ଟଙ୍କା ପଇସା ଆଣିବା ରଖିବା, ରଘୁକୁ ଦେବା, ପେନ୍‌ସନ ଆଣିବା, ସବୁ । ସେ ସତେ କି ଗୋଟାଏ ଭିନେ ଥିବା-ପଣ ।

ସେହି ଆରଟାକୁ ମୂଳଦୁଆ କରି ବେଳେ ବେଳେ ସେ ଭାବେ—"ମୁଁ କାହାକୁ ଭଲ ପାଏ ? କିଏ ମୋତେ ଭଲପାଏ ? ସଂସାରରେ କିଏ କାହାକୁ ଭଲ ପାଏ ? କେହି ନାହିଁ ।" ଆପଣା 'ଦର୍ଶନ' ଭିତରେ ବଳ ସଂଚୟ କରୁ କରୁ ପୁଣି କିଏ ତାକୁ କୁଆଡ଼େ ଘୋଷାରି ନିଏ, ତା' ଗୁଣ୍ଡ ଥରୁ ଥରୁ ସେ ସବୁ ଖିଅ ଯାଏ ଭୁଲି ।

ସେଦିନ ସେ ପାଇଖାନାରେ ବସିଥିଲି । ସକାଳ ଆଠ, କବାଟ ଆଉଜା । ଏଇ ତା'ର ନିବୁଜା ଦୁର୍ଗ । ନିଗୁଟିଆ ଭିତରେ ଆହୁରି ନିଗୁଟିଆ । ଏଠୁ ଗଲେ ଏତେ ସହଜ ନିର୍ଭିକ ହୋଇ ଅନ୍ୟଠି ସେ ଏଭଳି ଭାବି ପାରେ ନାହିଁ । ଏଠି ତା'ର ସ୍ୱାଧୀନତା ଅଛି, ଏଭଳି ବି ସବୁ ଭାବିବାକୁ, ଯାହା ଅନ୍ୟଠି ତା' ଆଗରେ ବି ଲାଗିବ ଉଦ୍‌ଭଟ, ମୂର୍ଖ, ଅକ୍ଷମଣୀୟ, ଦ୍ୱିପ୍ରାଣ୍ଡିତ ବୋଲି ।

କିନ୍ତୁ ସେତେବେଳେ ସେପରି କିଛି ସେ ଭାବୁ ନ ଥିଲି । ସେ ଖାଲି ପାଇଖାନା ବସିଛି । ତା' ପୂର୍ବରୁ ସେ କ'ଣ ଥିଲି, କ'ଣ ଭାବୁଥିଲି, ତା'

ପରେ କ'ଣ ଭାବିବ କି କରିବ, ସେ ନିଜେ କିଏ, କ'ଣ, ଏଭଳି ଚେତନା ବି ତା'ଠି ନ ଥିଲା । ଯେମିତି ହଠାତ୍ ଆକାଶରେ ଦିଶୁଥିବା ସାନ ବଉଦ ଖଣ୍ଡେ, ସେହି ମୁହୂର୍ତ୍ତରେ ସେ ଅଛି, ଦିଶୁଛି ତ ।

କିଛି ନ ଥିଲା, ଅନୁଭବ କଲା ବାଁ ଛାତି ପାଖେ କ'ଣ ଯନ୍ତ୍ରଣା । ଯେମିତି ବିସ୍ଫୁରେ ଚେଇଁ ଉଠିଲା । ସେ କ'ଣ କହିବାକୁ ଚାହେଁ, ପାଟି ଆଁ କରୁଛି । ତା' ପରେ ବସିଲାଠୁଁ ଟଳିପଡ଼ିଲା କରିକୁ ।

ଯେତେବେଳେ ବୁଢ଼ା ଚାକରଟି, ରଘୁ, ତାକୁ ସେଠି ଆବସ୍ଥାର କଲା, ଘରଭିତରେ ଚାରିଆଡ଼େ ପାଟି କରି ତାଡି ଆସିଲା ପରେ, ସେତବେଳକୁ ଆହୁରି ଘଣ୍ଟାଏ ଗଲାଣି, ଡାକବାଲା ଆସିଛି, ଗୁଡ଼ାଏ ଚିଠି ଆସିଛି, ଆଉ ଆସିଛି ଗୋଟାଏ ମନିଅର୍ଡ଼ର ।

"ଆହାହା···ତୁଳସୀ ବୃକ୍ଷ !" ବୁଢ଼ାଟି ବାଉଳା ହେଉ ଥାଏ, "କି ଅବସ୍ଥାରେ ସତେ ସେ ଚାଲି ଗଲେଟି । ଖାଲି ବସିଲାଠୁଁ ଟଳି ପଡ଼ିଲେ ! ମୁଁ ଏବେ କ'ଣ କରିବି ? କୁଆଡ଼କୁ ଯିବି ?"

ଡାକବାଲାଟି ମନିଅର୍ଡ଼ର ଫେରାଇ ନେଇ ତରବର ହୋଇ ଚାଲିଗଲା ।

———

ଶ୍ରୀ ସୁରେନ୍ଦ୍ର ମହାନ୍ତି

# ସାରୀପୁତ୍ର

ସାରୀପୁତ୍ର ଫେର ଆସୁଛି ଆଜ । ଭିକ୍ଷୁ ସାରୀପୁତ୍ର ନୁହେଁ, ବୁଦ୍ଧଙ୍କର ଶିଷ୍ୟଶିରୋମଣି ସାରୀପୁତ୍ର ନୁହେଁ, ରୂପଶ୍ରୀର ପୁତ୍ର ସାରୀପୁତ୍ର ଫେର ଆସୁଛି ଆଜ ଜନନୀର ଶୂନ୍ୟ କୁଟୀରକୁ ।

ମୁକୁଳିତ ଆମ୍ରୋଦ୍ୟାନରେ କୋକିଳର କୁହୁରବ ଅଶାନ୍ତରୁ ଅଶାନ୍ତତର ହୋଇଉଠୁଛି । ସେହି ବ୍ୟଗ୍ର ଅଶାନ୍ତ କୁହୁରବ ଭିତରେ ପ୍ରକାଶ ପାଇଛି, ଯେପରି ଜନନୀ ରୂପଶ୍ରୀର ଆହ୍ୱାନ···ଫେରିଆସ ପୁତ୍ର, ଫେରିଆସ ସାରୀପୁତ୍ର !

ସାରୀପୁତ୍ର ଫେର ଆସୁଛି ଆଜ !

ଦେବତା, ବ୍ରାହ୍ମଣଙ୍କ କଥା କ'ଣ ମିଛ ହୁଏ ? ସେ ଦିନ ରାତି—କିଏ ଦେବତା ଆସି ସ୍ୱପ୍ନରେ ଦେଖା ଦେଇ କହିଲେ···"ତମେ ପୂର୍ବଜନ୍ମର ଦୁଷ୍କୃତରୁ ଏ ଜନ୍ମରେ ଏପରି ପୁତ୍ର ବିଚ୍ଛେଦ ଭୋଗକରୁଛ; କିନ୍ତୁ ସେ ଦୁଃଖର ରାତି ଏଥର ପାହି ଆସିଲା ରୂପଶ୍ରୀ···ଦେବ ଦ୍ୱିଜରେ ଭକ୍ତିରଖ । ବ୍ରାହ୍ମଣଙ୍କୁ ସୁବର୍ଣ୍ଣ ଦାନ କର । ସାରୀପୁତ୍ର ଫେରି ଆସିବ ନିଶ୍ଚୟ !"

ରାତ୍ର ସେତେବେଳକୁ ତଥାପି ଥାଏ ଆଉରି ବାକି, ରୂପଶ୍ରୀର ଆଖିରେ ଆଉ ପଲକ ପଡ଼ିଲାନାହିଁ । ସକାଳର ଅପେକ୍ଷାରେ ସେ ଖାଲି ବିଛଣାରେ ପଡ଼ି ଛଟପଟ ହେଉଥାଏ । ଭଲକରି ସକାଳ ନ ହେଉଣୁ ସେ ଧାଇଁଲା ବ୍ରାହ୍ମଣ ଶୁଭ୍ରଜ୍ୟୋତିଙ୍କ ଘରକୁ । ନୀଚ ଶୂଦ୍ରକୂଳରେ ଜନ୍ମ ରୂପଶ୍ରୀର । ଶୁଭ୍ରଜ୍ୟୋତି ସେତେବେଳକୁ ବାହାରିଥିଲେ ମନ୍ଦିରପଥରେ ପୂଜାର ଉପକରଣ ଘେନି । ପଥପାର୍ଶ୍ୱରେ ଶୂଦ୍ରାଣୀ ରୂପଶ୍ରୀକୁ ଦେଖି ବିରକ୍ତ ହୋଇ କହିଲେ···"ଦେଖି ପାରୁନାହୁଁ ! ପାପୀୟସି ! ପୂଜା ଉପକରଣ ଘେନି ମୁଁ ବିଷ୍ଣୁଙ୍କ ମନ୍ଦିରକୁ ଯାଉଛି । ତୋର ଛାୟା ପଡ଼ି ସବୁ ଅପବିତ୍ର ହୋଇଗଲା ଯେ !"

ଶୂଦ୍ରାଣୀ ରୂପଶ୍ରୀ, ଅନୁନୟର କଣ୍ଠରେ କହିଲା···"ମୋତେ କ୍ଷମା କରନ୍ତୁ ବ୍ରାହ୍ମଣ ଶୁଭ୍ରଜ୍ୟୋତି, ମୋର ଅପରାଧ ହୋଇଛି ।"

ତା' ପରେ ଛିନ୍ନ, ମଳିନ ପରିଧାନର ଅନ୍ତରାଳରୁ ତାର କେତେଗୋଟି ବହୁଦିନରୁ ସଞ୍ଚିତ ସ୍ୱର୍ଣ୍ଣମୁଦ୍ରା କାଢ଼ି ଶୁଭ୍ରଜ୍ୟୋତିଙ୍କ ପାଦତଳେ ରଖି ସେ କହିଲା···"ନିଆଶ୍ରୀ ହୀନକପାଳୀ ମୁଁ ବ୍ରାହ୍ମଣ, ଆପଣଙ୍କ ପାଖକୁ ଆସିଛି ଗୋଟିଏ ପରାମର୍ଶ ପାଇଁ ।"

ଶୁଭ୍ରଜ୍ୟୋତିଙ୍କ ଗଳାର ସ୍ୱର ନରମ ହୋଇଗଲା । ସେ ଆଶ୍ୱାସନା ଓ ଦମ୍ଭ ଶୁଣାଇ କହିଲେ···"କ'ଣ ହୋଇଛି ମୋତେ କହ ରୂପଶ୍ରୀ । ଦୁଃଖରେ ଅଧୀର ହୁଅନା । ପ୍ରାଣୀର ଦୁଃଖ ଅପନୋଦନ କରିବା ତ ବ୍ରାହ୍ମଣର କର୍ତ୍ତବ୍ୟ । ଏ ସ୍ୱର୍ଣ୍ଣମୁଦ୍ରାରେ ବା କି ପ୍ରୟୋଜନ ଥିଲା ? ହେଉ, ଆଣିଛୁ ଯେତେବେଳେ, ନ ନେଲେ ତ ମୋର ଅପରାଧ ହେବ ।"

ରୂପଶ୍ରୀ କହିଲା···"ସାଗରପୁତ୍ର କ'ଣ ସତରେ ଫେରିବ ଆଉ ବ୍ରାହ୍ମଣ ? କାଲି ରାତ୍ରରେ ମୁଁ ସ୍ୱପ୍ନରେ ଦେଖିଲି, ଜଣେ ଦେବତା ମୋତେ

ସ୍ୱପ୍ନରେ ଦେଖାଦେଇ ଅଭୟ ଶୁଣାଇଲେ···ମୋର ସାଗ୍ରି ଫେରି ଆସିବ ନିଶ୍ଚୟ । କେଉଁ ପୂର୍ବଜନ୍ମର ଦୁଷ୍କୃତରୁ ମୁଁ କୁଆଡ଼େ ଏ ଜନ୍ମରେ ଏ ପୁତ୍ରବିଚ୍ଛେଦ ଭୋଗ କରୁଛି, କିନ୍ତୁ ସାଗ୍ରି ଫେରିବ ତ ! କହ ବ୍ରାହ୍ମଣ···ତମେ ତ ତ୍ରିକାଳଦର୍ଶୀ ।"

ଶୁଭ୍ରଜ୍ୟୋତି କିଛି ସମୟ ଦୁଇ ଚକ୍ଷୁ ନିମୀଳିତ କରିବା ପରେ କହିଲେ···"ତମେ ପୂର୍ବଜନ୍ମରେ ବ୍ୟାଧ ରୂପରେ ଜନ୍ମ ନେଇଥିଲ ରୂପଶ୍ରୀ ! ଦିନେ ଗୋଟିଏ ମୃଗୁଣୀ ମୃଗ ଶିଶୁ ସହିତ ଯାଉଥିଲା ଶାନ୍ତ ଚ୍ଛାୟାସ୍ନିଗ୍ଧ ଅରଣ୍ୟପଥରେ । ସେତିକିବେଳେ ତମେ ଶର ସନ୍ଧାନକଲ ମୃଗୁଣୀକୁ ଲକ୍ଷ୍ୟ କରି; କିନ୍ତୁ ଶରଭେଦ କଲା ମୃଗଶିଶୁର ନବନୀତ କୋମଳ ଦେହରେ । ସଙ୍ଗେ ସଙ୍ଗେ ଯନ୍ତ୍ରଣାର ଜ୍ୱାଳାରେ ପ୍ରାଣବାୟୁ ତାର ଉଡ଼ିଗଲା । ସେହି ମୃଗୁଣୀର ଅଭିଶାପରେ ତମକୁ ଏ ଜନ୍ମରେ ଭୋଗକରିବା ପାଇଁ ପଡ଼ୁଛି ଏ ପୁତ୍ର ବିଚ୍ଛେଦ ଯନ୍ତ୍ରଣା । ତଥାପି; ସ୍ୱଚ୍ଛ ହୃଦୟରେ ଫେରିଯାଅ ରୂପଶ୍ରୀ, ସାଗ୍ରିପୁତ୍ର ଫେରି ଆସିବ ନିଶ୍ଚୟ !"

ରୂପଶ୍ରୀ ବ୍ରାହ୍ମଣ ଶୁଭ୍ରଜ୍ୟୋତିଙ୍କ ପାଦତଳେ ପ୍ରଣତି ଜଣାଇ କହିଲା···"ତମର ଆଶୀର୍ବାଦ ପୂର୍ଣ୍ଣ ହେଉ ବ୍ରାହ୍ମଣ !"

ସେ ଅନେକ-ଅନେକ ଦିନ ତଳର କଥା । ସାଗ୍ରିପୁତ୍ରର ପ୍ରତୀକ୍ଷାରେ ଦିନ ରାତି ହୁଏ, ରାତି ଦିନ ହୁଏ ପୁଣି । ତଥାପି ଭାଙ୍ଗେନାହିଁ ରୂପଶ୍ରୀର ଆଶା···ସାଗ୍ରିପୁତ୍ର ଫେରିବ ନିଶ୍ଚୟ ।

ଦିନେ ଦିନେ ଜନଶ୍ରୁତିରେ ରୂପଶ୍ରୀ ଶୁଣେ ପୁତ୍ର ସାଗ୍ରିପୁତ୍ରର କଥା । ପ୍ରଭୁ ବୁଦ୍ଧଙ୍କର ଶିଷ୍ୟ ଶିରୋମଣି ସାଗ୍ରିପୁତ୍ର···ପ୍ରଭାବରେ ତାଙ୍କର ସମୁଦାୟ ଆର୍ଯ୍ୟାବର୍ତ୍ତ ଉଦ୍ଭାସିତ, ମହିମାରେ ମହିମାନ୍ୱିତ, କରୁଣାରେ ସ୍ନିଗ୍ଧ ଓ ସାଧନାରେ ଉଜ୍ଜ୍ୱଳ ! କିନ୍ତୁ ପୁତ୍ରର ସୁଖ୍ୟାତିରେ ଜନନୀର ପ୍ରାଣ

ଗବୋଉଫୁଲ୍ଲ ହୁଏନା ! ପ୍ରାଣର ନିଭୃତ କନ୍ଦରରେ ତାର ଜାଗି ଉଠେ ଅସ୍ଫୁଟ ନୀରବ ପ୍ରାର୍ଥନା······ସାଗ୍ଗପୁତ୍ରକୁ ସଦ୍‌ବୁଦ୍ଧି ଦିଅ ଭଗବାନ୍ । ଏ ମତିଭ୍ରମରୁ ଅବୋଧ ପୁତ୍ରକୁ ତାର ରକ୍ଷାକର ପ୍ରଭୁ ! ଦେବତା ବ୍ରାହ୍ମଣ ନିନ୍ଦାଠୁଁ ବଳି ଆଉ କି ଘୋରତର ପାପ ବା ଥାଇପାରେ ? ମଣିଷ ଜନ୍ମମାନେ ସମାନ, ଏହା କ'ଣ ସମ୍ଭବ ହୋଇପାରେ କେବେ ? ବେଦକୁ ଅସ୍ୱୀକାର କଲେ, ସପ୍ତନରକରେ ସୁଦ୍ଧା ସ୍ଥାନ ମିଳିବନାହିଁ ଯେ ! ହେ ଦଶଦିଗପାଳ; ହେ ତେତିଶିକୋଟି ଦେବତା, ସାଗ୍ଗପୁତ୍ରକୁ ମାର୍ଜନା କର······ସଦ୍‌ବୁଦ୍ଧି ଦିଅ ତାକୁ !

କେବେ କେବେ ବୌଦ୍ଧଭିକ୍ଷୁମାନେ, ରୂପଶ୍ରୀର କୁଟୀରକୁ ଆସନ୍ତି ଭିକ୍ଷାପାଇଁ, କିନ୍ତୁ ରୂପଶ୍ରୀ ସେମାନଙ୍କୁ ଦୂର୍‌ଦୂର୍ ମାରି ମାରି କରି ତଡ଼ିଦିଏ । ବୌଦ୍ଧଭିକ୍ଷୁମାନଙ୍କୁ ଦେଖିଲେ ତାର ଦେହସାରା ଯେମିତି ବିଷ ଚରିଯାଏ । କରୁଣାର ଆବରଣ ତଳେ କି ନିଷ୍କରୁଣ ଜୀବ ଏମାନେ ! ଘର ନାହିଁ, ଦ୍ୱାର ନାହିଁ, ମା ନାହିଁ, ପୁଅ ନାହିଁ, ଝିଅ ନାହିଁ, ମାୟା ନାହିଁ, ମମତା ନାହିଁ— ଅଥଚ କିଏ ଏମାନଙ୍କୁ କହିଥିଲା ଏ ପୃଥିବୀକୁ ଆସି ପୃଥିବୀର ଦୁଃଖ ସଙ୍ଗରେ ଅଶାନ୍ତିର ଭାର ବଢ଼ାଇବା ପାଇଁ ? ରୂପଶ୍ରୀ କେବେ ଅବଶ୍ୟ ବୁଦ୍ଧଙ୍କୁ ଦେଖି ନାହିଁ । କିନ୍ତୁ ଶୁଣିଛି—ସେଦିନ କୁଆଡ଼େ କି ଗୋଟିଏ ପୂର୍ଣ୍ଣିମୀର ରାତି ! କପିଳବାସ୍ତୁ ରାଜପ୍ରାସାଦରେ ସମସ୍ତେ ଯିଏ ଯୁଆଡ଼େ ଶୋଇ ପଡ଼ିଲେଣି । ସୁକୁମାରୀ ଗୋପା ସ୍ୱାମୀଙ୍କ ବାହୁଉପରେ ପୁଷ୍ପିତକବରୀର ଭାର ରଖି ଶୋଇ ପଡ଼ିଛନ୍ତି । ଗୋପାଙ୍କ କୋଳରେ ଶିଶୁ ରାହୁଲ ମଧ୍ୟ ନିଦ୍ରା-ଅଚେତନ । ରାତିର ସେହି ନିସ୍ତବ୍ଧ ପ୍ରହରରେ ଗୌତମ, ଗୋପାଙ୍କ ମୁଣ୍ଡ ନିଜ ବାହୁ ଉପରୁ ଖସାଇ ନେଲେ । ତା'ପରେ ସନ୍ନ୍ୟାସୀର ଗୈରିକ ବସନ ପିନ୍ଧି ବାହାରିଲେ କପିଳବାସ୍ତୁର ସୁପ୍ତ ରାଜପଥରେ ! ଆଉ ପଛରେ ରହିଗଲେ ଏକ ବିରାଟ ଅଶାନ୍ତି; ଶେଷହୀନ ହା-ହା-କାର ଓ ତୃପ୍ତିହୀନ ତୃଷ୍ଣା ।

ଯେତେଥର ରୂପଶ୍ରୀ ଗୋପାଙ୍କ କଥା ଭାବୁଛି, ସେତେଥର ରାଜରାଣୀ ଗୋପାଙ୍କ ଦୁଃଖରେ ପ୍ରାଣ ତାର କାନ୍ଦି କାନ୍ଦି ଉଠୁଛି । ଶିଥିଳ, ରକ୍ତହୀନ ଦୁଇ ଗଣ୍ଡ ଉପରେ ବହି ଆସିଛି ଦୁଇଧାର ଲୁହ ।

ସାଆନ୍ତପୁତ୍ର ଦିନେ ବିବାହ କରିଥାନ୍ତା, ଘରକୁ ଆସିଥାନ୍ତା ବୋହୂଟିଏ । ତା'ର ଶୁଭ କଙ୍କଣଧ୍ୱନିରେ ରୂପଶ୍ରୀର ରିକ୍ତ ଓ ଶୂନ୍ୟ ଜୀବନର ହା-ହା-କାରମୟ କୋଣ, ଅନୁକୋଣ ମୁଖରିତ ହୋଇ ଉଠିଥାନ୍ତା । ତା'ପରେ ଆସିଥାନ୍ତେ ବସନ୍ତର ନବମୁକୁଳ ପରି, କେତେ ଶିଶୁ କୋଳାହଳ କରି । ଶୀତଶୀର୍ଣ୍ଣା ଧରଣୀରେ ବସନ୍ତର କଳରବ ପରି, ରୂପଶ୍ରୀର ଜୀବନରେ ମଧ୍ୟ ଆସିଥାନ୍ତା ବସନ୍ତ; କିନ୍ତୁ ହେଲା ଆଉ କେଉଁଠୁ ? ସବୁ ସ୍ୱପ୍ନ ଖାଲି ସ୍ୱପ୍ନରେ ହିଁ ରହିଲା । ସାଆନ୍ତପୁତ୍ର ହେଲା ଘରଛଡ଼ା ଉଦାସୀ !

ଏ······ମ । ଦିନ ଆସି କେତେ ହେଲାଣି ମ ? ରୂପଶ୍ରୀ ତରତର କରି ବିଛଣା ଉପରେ ଉଠି ବସିଲା । ନାଁ, ଆଜି ଆଉ ସେ କାହା ଦୁଆରକୁ ଯିବନାହିଁ ପାଇଟି କରି । ଆଜି ଯେ ସେ ତାର ହଜିଲା କୋଟିନିଧି ପୁଣି ଫେରିପାଇବ । ଆଉ ରହିବ ନାହିଁ ଦାରିଦ୍ର୍ୟ, ଅଭାବ ଓ ଦୁଃଖ । ଚୂଳ ଉପରେ ଶୁଭ କାଉଟିଏ କା-କା ହେଉଛି । ରୂପଶ୍ରୀ ଉଠିଯାଇଁ ମୁଠାଏ ଚାଉଳ ରଖିଦେଲା ଦୁଆର ମଝିରେ । କାଉ ଆସି ଗୋଟିଏ ମୁଠା ଚାଉଳ ଝୁମ୍ପିନେଇ ପୁଣି ଉଡ଼ିଗଲା ଚୂଳ ଉପରକୁ । ଶୁଭକାଉ କଥା ମିଛ ହେବ-ନାହିଁ କେବେ···ସାଆନ୍ତପୁତ୍ର ଫେରିଆସୁଛି, ଆଜି ରୂପଶ୍ରୀର କୋଳକୁ ।

ଏତେଦିନ ଏତେ ଆଶା ତ ମିଛ ହୋଇଛି । ଆଜି ଯଦି ଆଗପରି ସବୁ ମିଛ ହୋଇଯାଏ ? ରୂପଶ୍ରୀର ଛାତି ଦମ ଦମ ହୋଇ ପଡ଼ିଲା ।··· ନା-ନା, ଶୁଭକାଉର କଥା କ'ଣ ମିଛ ହୁଏ କେବେ ?

ସେଦିନ ରୂପଶ୍ରୀ, ସାର ଦିନର ପେଟପାଟଣା ପରେ କୁଡ଼ିଆ ଦୁଆରେ ବସି ଚାହିଁଥିଲା, ଦୂରର ଅଙ୍କାବଙ୍କା ରାସ୍ତା ଆଡ଼େ। ସେଇ ରାସ୍ତାରେ ସାଙ୍ଗପୁତ୍ର ଦିନେ କୁଆଡ଼େ ଚାଲିଗଲା। ଆଉ ହୁଏତ ଫେରିବ ନାହିଁ; କିନ୍ତୁ ଶୁଭ୍ରଜ୍ୟୋତି ତ ବାରମ୍ବାର ସାନ୍ତ୍ୱନା ଦିଅନ୍ତି ତାକୁ···କେଜାଣି ହୁଏତ ଫେରିପାରେ !

ଓଃ···ସେ ଅନେକ, ଅନେକ ଦିନ ତଳର କଥା। ନାଲନ୍ଦାରୁ ଦଳେ ଅଭିନେତା ସବୁଆଡ଼େ ବୁଲି ବୁଲି 'ନବାଣ' ନାଟକର ଅଭିନୟ ଦେଖାଉଥାନ୍ତି। ଦିନେ ଅଭିନୟ ଦେଖିଯିବାପାଇଁ ସାଙ୍ଗପୁତ୍ର ଅଡ଼ି ବସିଲା। ରୂପଶ୍ରୀ ସେଥିରେ ବାଧା ଦେଲାନାହିଁ। ଅଭିନୟ ଦେଖି ଫେରିବା ପରେ ସାଙ୍ଗପୁତ୍ର ପାଲଟିଗଲା ଯେମିତି ଗୋଟିଏ ଭିନ୍ନ ମଣିଷ। ସେଦିନ ସାଙ୍ଗପୁତ୍ର ସବୁଦିନ ପରି ଗୋଠକୁ ଗାଈପଲ ଧରି ଗଲାନାହିଁ, ଗାଧୋଇଲା ନାହିଁ କି ଖାଇଲା ନାହିଁ। ରୂପଶ୍ରୀର ଲକ୍ଷ ପ୍ରଶ୍ନ—କଣ ହୋଇଛି ତାର ? କିନ୍ତୁ ସାଙ୍ଗ-ପୁତ୍ର କୌଣସି ଉତ୍ତର ଦେଲାନାହିଁ।···କେତେବେଳ ପରେ ସାଙ୍ଗପୁତ୍ର ପଚାରିଲା, 'ତୁ କ'ଣ ଦିନେ ମରିଯିବୁ ବୋଉ !' ରୂପଶ୍ରୀ ହସି ହସି ଜବାବ ଦେଲା—"ସେ ଆଉ ନୂଆକଥା କ'ଣରେ ବାପ ? ଦେବତାମାନେ ତ ସୁଦ୍ଧା ଜନ୍ମ ହେଲେ ମରନ୍ତି।"

ସାଙ୍ଗପୁତ୍ର ପଚାରିଲା···"ମୁଁ ବି ତ ଦିନେ ମରିଯିବି ବୋଉ !"

ରୂପଶ୍ରୀର ମୁହଁ ଉପରେ ଯେପରି କଳାମେଘର ଛାଇ ବୁଲିଗଲା। ସେ କାନ୍ଦ କାନ୍ଦ ହୋଇ ସାଙ୍ଗପୁତ୍ରକୁ ଛାତି ଉପରେ ଚାପି ଧରି କହିଲା···"ସେ କଥା ଆଉ କେବେ ମୁହଁରେ ଧରିବୁ ନାହିଁରେ ବାପ ! ତୋର ମୁହଁକୁ ଚାହିଁ ମୁଁ ଖାଲି ଛାତି ପଥର କରି ପଡ଼ି ରହିଛି। ଷଠୀଦେଵୀ ତତେ ନଈବାଲିର ଆୟୁଷ ଦିଅନ୍ତୁ।"

ସାଥ୍ପୁତ୍ର ଧୀରେ ଧୀରେ ଉଠି ଠିଆହେଲା । ତା'ପରେ ଗାଁ ଦାଣ୍ଡର ସେଇ ଅଙ୍କାବଙ୍କା ରାସ୍ତାରେ ବାହାରିଗଲା କୁଆଡ଼େ । ରୂପଶ୍ରୀ ମନେ ମନେ ଭାବିଲା, ମୁଣ୍ଡପାଗଳଟା, କ'ଣ ଏଣୁ ତେଣୁ ଗୁଡ଼ାଏ ପଚାରୁଥିଲା । ବାହାରୁ ଟିକିଏ ବୁଲି ଆସିଲେ ମନ ତାର ପୁଣି ବଦଳିଯିବ ଯେ ! ରୂପଶ୍ରୀ ନିତି-ଦିନିଆ ଘରପାଟଣାରେ ମନ ଦେଲା ।

ସନ୍ଧ୍ୟା ହେଲା । ଗୋଠରୁ ଗାଈପଲ ଫେରିଲେ । ଦେଉଳରେ ଆରତି ଘଣ୍ଟା ବାଜିଲା । ରାତି ଆସିଲା । ଅନ୍ଧାର ଆହୁରି ନିବୁଜ ହୋଇ ଆସିଲା । ଆକାଶରେ ଏକ, ଦୁଇ, ତିନି ହୋଇ ଫୁଟି ଉଠିଲା କୋଟି କୋଟି ନକ୍ଷତ୍ର । ସାଥ୍ କାହିଁ ! କାହିଁ ସାଥ୍ପୁତ୍ର ?

ନିଜର ଚିନ୍ତାରେ ରୂପଶ୍ରୀ ନିଜେ କୁଆଡ଼େ ହଜିଯାଇଛି । ଜଣେ ବୌଦ୍ଧଭିକ୍ଷୁ କୁଆଡ଼ୁ ଆସି ରୂପଶ୍ରୀ ପିଣ୍ଡାରେ ବସିପଡ଼ି ଗାଇ ଉଠିଲା···

"ବୁଦ୍ଧଂ ଶରଣଂ ଗଚ୍ଛାମି !"

ରୂପଶ୍ରୀର ଦେହସାରା ଯେମିତି ବିଷ ଚରିଗଲା; ମାତ୍ର ନିଜକୁ ସଂଯତ କରି, ସେ କେଜାଣି କାହିଁକି ପଚାରି ଦେଲା···"ଆଚ୍ଛା, ତୁମେ ସାଥ୍ପୁତ୍ରର ଖବର ଜାଣିଛ ଭିକ୍ଷୁ ?"

ଭିକ୍ଷୁ କହିଲା···"ନିଶ୍ଚୟ ! ତାଙ୍କରିଠାରୁ ଖବର ନେଇ ତ ଲୁମ୍ବିନୀରୁ ଏତେ ବାଟ ଚାଲି ଚାଲି ଆସୁଛି ।"

ରୂପଶ୍ରୀ ଆନନ୍ଦୋତ୍‌ଫୁଲ୍ଲ କଣ୍ଠରେ ପଚାରିଲା···"କି ଖବର ପଠାଇଛି ସାଥ୍ପୁତ୍ର ?···କହ ଭିକ୍ଷୁ, ତାର ସବୁ କୁଶଳ ତ ?"

ଭିକ୍ଷୁ କହିଲା···"ଆସନ୍ତା ଫାଲ୍‌ଗୁନ ପୂର୍ଣ୍ଣିମାଦିନ ସେ ଫେରି ଆସିବେ ବୋଲି ମୋ ହାତରେ ଖବର ପଠାଇଛନ୍ତି ମା !"

ସେଦିନ ରୂପଶ୍ରୀ ଦ୍ୱାରରୁ ଭିକ୍ଷାଡଣ୍ଡୁଳର ଘର, ଭିକ୍ଷୁ ବୋଧି ପାରିଲି ନାହିଁ । ଏ ଘରଛଡ଼ା ଭିକ୍ଷୁମାନଙ୍କ ପ୍ରତି ରୂପଶ୍ରୀର ପ୍ରାଣ କପରି ଅସ୍ୱାଭାବିକ ଭାବରେ କୋମଳ ହୋଇ ଉଠିଲି !

ସେ ଦିନ ଫାଲ୍‌ଗୁନ ପୂର୍ଣ୍ଣିମା···

ପୂର୍ଣ୍ଣଚନ୍ଦ୍ର ଉଠୁଛି ରାଜଗୃହ ସୀମାନ୍ତରେ ବନଶୀର୍ଷିଉଡ଼ାଳରୁ । ରୂପଶ୍ରୀ ସେହି ପୂର୍ଣ୍ଣଚନ୍ଦ୍ର ଆଡ଼େ ସ୍ୱପ୍ନର ଜାଲ ବୁଣି ଚାଲିଛି । ପୁଣି ତାର ଭଙ୍ଗା ସଂସାର ସୁନାର ହସରେ ହସି ଉଠିବ । ସାଖିପୁତ୍ରଙ୍କୁ ବିବାହ ନ ଦେଇ ସେ ଛାଡ଼ିବ ନାହିଁ ଏଥର ।

ସେ ଯେଉଁ ଚମ୍ପାଗୋଷ୍ଠୀ ଝିଅଟି—ଉପାଳୀ ! ଅନେକ, ଅନେକ ଦିନରୁ ରୂପଶ୍ରୀ ତା କଥା ଭାବି ଠିକ୍ କରି ରଖିଛି । ଉପାଳୀର କଳା ଆଖିର ସ୍ୱପ୍ନ-ଜାଲରେ ଥରେ ଧରାପଡ଼ିଲେ, ସେ କ'ଣ ଆଉ କେବେ ଏ ଘରଛଡ଼ା ଭିକ୍ଷୁଙ୍କ ଦଳରେ ମିଶିବ ? ହେ ଭଗବାନ୍ ! ଏଥର ଯେମିତି ତାର ହରାନିଧି, ହାତକୁ ଆସି ପୁଣି ହାତଛଡ଼ା ନ ହୁଏ !

ପୂର୍ଣ୍ଣିମାର ଚନ୍ଦ୍ର, ବିଲ୍ୱଲଯୂର ବହୁତ ଉପରକୁ ଉଠି ଆସିଲାଣି । ରୂପଶ୍ରୀର ମନର ଆକାଶରେ ଆଶଙ୍କାର ଛାଇ କ୍ରମେ ଘାଢରୁ ଘାଢତର ହୋଇ ଉଠୁଛି । ଏତିକିବେଳେ ଦୂରରୁ କାହାର କଣ୍ଠସ୍ୱର ଶୁଭିଲା··· "ବୁଦ୍ଧଂ ଶରଣଂ ଗଚ୍ଛାମି !"

କାହାର ! କାହାର ଏ କଣ୍ଠସ୍ୱର ? ଏ ଯେ ସାଖିପୁତ୍ର ! ରୂପଶ୍ରୀ ଉଠି ଧାଇଁଗଲି ପୂର୍ଣ୍ଣିମାର ଜ୍ୟୋତ୍ସ୍ନାଲୋକ ଭିତରକୁ ! କଣ୍ଠରେ ତାର ଅଶାନ୍ତ ଚିତ୍କାର···"ସାଖି—ସାଖିପୁତ୍ର !"

ଗୋଟିଏ ଶୀର୍ଣ୍ଣ, ଲୁଣ୍ଠିତମସ୍ତକ, ଜରାଜୀର୍ଣ୍ଣ ଭିକ୍ଷୁ ରୂପଶ୍ରୀର ପଦ-ତଳେ ମୁଣ୍ଡ ନୁଆଇଁ ପ୍ରଣିପାତ କଲେ । ରୂପଶ୍ରୀ ବ୍ୟସ୍ତ ଭାବରେ ପଚାରିଲା—“କହ ଭିକ୍ଷୁ । ସାରିପୁତ୍ର କାହିଁ ? ଆଜ ପରା ଫାଲ୍‌ଗୁନ ପୂର୍ଣ୍ଣିମା ।”

ଭିକ୍ଷୁ ଜବାବ ଦେଲା—“ମୁଁ ଯେ ସାରିପୁତ୍ର ମା !”

ରୂପଶ୍ରୀ କାନ୍ଦ କାନ୍ଦ ହୋଇ କହିଲା—“ନା, ନା, ମୋ ସଙ୍ଗରେ ଆଉ ଛଳନା କରନା ବାପ ! କହ ମୋର ସାରି କାହିଁ ?”

ଭିକ୍ଷୁ ସ୍ମିତ ହସି କହିଲେ—“ମୁଁ ଯେ ତମର ସାରିପୁତ୍ର ମା ! ଲୁମ୍ବିନୀରୁ ଆସିଛି ।”

ଏଇ ସାରିପୁତ୍ର ! ଏଇ ଲୁଣ୍ଠିତ ମସ୍ତକ, ଜରାଜୀର୍ଣ୍ଣ କଙ୍କାଳସାର ଭିକ୍ଷୁ । ମୁହଁରେ ପୁଣି ସେଇ ଅଲକ୍ଷଣା ଘରଭଙ୍ଗା କଥା—“ବୁଦ୍ଧଂ ଶରଣଂ ଗଚ୍ଛାମି !”

ଏ ଯେମିତି ତାର ଭଙ୍ଗା ସଂସାରର ବିକଟ ଉପହାସ । ତାର ସ୍ୱପ୍ନରସମାଧି । ସେ ତ ଏ ସାରିପୁତ୍ରକୁ ଚାହିଁ ନ ଥିଲା ! ରୂପଶ୍ରୀର କଣ୍ଠ ହଠାତ୍ କଠୋର ହୋଇ ଉଠିଲା । ସେ ପଚାରିଲା···“କହଭିକ୍ଷୁ ! ମୋଠାରେ ବା କି ପ୍ରୟୋଜନ, ତମେ ପ୍ରଭୁ ବୁଦ୍ଧଙ୍କର ଶିଷ୍ୟଶିରୋମଣି, ସାଧକଶ୍ରେଷ୍ଠ ସାରିପୁତ୍ର । ଆଉ ମୁଁ ଧନ ହୀନା, ପୁତ୍ରହୀନା ଏକ ଜନନୀ । କ’ଣ ବା ଅଛି ମୋର ? କି ଭିକ୍ଷା ବା ଦେବି ମୁଁ ?”

ବାଳିକା-ସୁଲଭ ଅଭିମାନରେ ବୃଦ୍ଧା ରୂପଶ୍ରୀର କଣ୍ଠ ଥରଥର ଉଠିଲା ।

ସାଗ୍ନପୁତ୍ର କହିଲେ···"ଗୋଟିଏ ଭିକ୍ଷା ନେଇ ମୁଁ ଆସିଛି ମା ! ଗୌତମୀ ପ୍ରଜାପତିଙ୍କୁ ସଙ୍ଘରେ ଯୋଗଦେବାପାଇଁ ବୁଦ୍ଧ ଆଜ୍ଞା ଦେଇ-ଛନ୍ତି । ତାଙ୍କର ସହକର୍ମିଣୀ ରୂପେ, ମୁଁ ତମକୁ ଚାହେଁ ମା । ସେହି ମୋର ଭିକ୍ଷା ।"

ରୂପଶ୍ରୀ ଆହତ ଦୃଷ୍ଟିରେ ଚାହିଁଥିଲା । ଫାଲ୍‌ଗୁନ ପୂର୍ଣ୍ଣିମାର ଚନ୍ଦ୍ର-ଆଡ଼େ । ସାଗ୍ନପୁତ୍ର କହିଲେ···"କୁହ ମା ! ବୁଦ୍ଧଂ ଶରଣଂ ଗଚ୍ଛାମି !"

ରୂପଶ୍ରୀ ରୂଢ଼କଣ୍ଠରେ କହିଲା···"ଫେରିଯାଅ ଭିକ୍ଷୁ ! କୋଟି କୋଟି ପ୍ରାଣରେ ଅଶାନ୍ତ ଓ ଅତୃପ୍ତିର ଦାବାନଳ ଜଳାଇ ଯେଉଁ ସଙ୍ଘର ପ୍ରତିଷ୍ଠା, ସେ ସଙ୍ଘ ରହିବ ନାହିଁ ଭିକ୍ଷୁ । ଏ ମୋର ଅଭିଶାପ ।"

ସାଗ୍ନପୁତ୍ର କିଂକର୍ତ୍ତବ୍ୟବିମୂଢ଼ ଭାବରେ କହିଲେ, 'ମା' !

ରୂପଶ୍ରୀ ଜବାବ ଦେଲା—"ଭିକ୍ଷୁର ମା ପୁଣି କ'ଣ ?"

ସାଗ୍ନପୁତ୍ର କହିଲେ—"କିନ୍ତୁ ନିର୍ବାଣର ଏକମାତ୍ର ପଥ ପ୍ରଭୁ ବୁଦ୍ଧଙ୍କର ଏହି ସଙ୍ଘ, ମା ! ନିର୍ବାଣ କ'ଣ ତମେ ଚାହଁ ନାହିଁ ଜନନୀ ?"

"ରୂପଶ୍ରୀ କହିଲା—"ଫେରିଯାଅ ଭିକ୍ଷୁ ! ମୁଁ ଚାହେଁ ଜୀବନ, ନିର୍ବାଣ ନୁହେଁ !"

ରୂପଶ୍ରୀ ଫେରି ଆସିଲା ତାର ସେହି ଭଙ୍ଗା କୁଡ଼ିଆ ଆଡ଼େ । ସାଗ୍ନପୁତ୍ର ବାଟର ଅଶରୀରୀ ଛାୟାପରି, ମିଶିଗଲେ ଫାଲ୍‌ଗୁନ ପୂର୍ଣ୍ଣିମାର ଜ୍ୟୋତ୍ସ୍ନା ଭିତରେ ।

---

ମହାପାତ୍ର ନୀଳମଣି ସାହୁ

# ବାଘର ବିଳାପ

ଧରମୁ କୁଣ୍ଡ ନାଁ ଆପଣ ଶୁଣିଛନ୍ତି ? ଶୁଣିନାହାନ୍ତି ? ହଁ ଶୁଣିଥାଇ ପାରନ୍ତି—ମାତ୍ର ଭୁଲିଯିବେଣି । କାରଣ ସେ ଆଜିକି ଅନେକ ଦିନ ତଳର କଥା । ଧରମୁ କୁଣ୍ଡ ଆମ ଗାଁର ଲୋକ । ପାଞ୍ଚ ହାତର ମର୍ଦ୍ଦ । ହାଣ୍ଡି କଳା ପରି ଚେହେରା—ଆଖି ଦିଟା ଲାଲ ଲାଲ । ଲଲାଟରେ ଚନ୍ଦନ ସଙ୍ଗେ ସଙ୍ଗେ ସିନ୍ଦୂରରେ ଅଙ୍କା ଗୋଟେ ତ୍ରିଶୂଳ । ମୁଣ୍ଡରେ ବାବୁରି ବାଳ । ପାତଳା ହୋଇ ଲୋକ । ଓଠ ତଳକୁ ଚିବୁକରେ ଛେଳି ଥୋଡ଼ି ପରି ଅଳ୍ପଏ ଦାଢ଼ି । ଦେଖିଲେ ଭୟ ଲାଗେ । ଲୋକେ କହନ୍ତି—କାପାଳିକ । ଛଅ ଖଣ୍ଡ ଗାଁରେ ଗୁଣିଆ ହିସାବରେ ନାମ ଅର୍ଜିଛି । ଘରେ ଚଣ୍ଡୀସାଧନା କରେ । ନିଜ ହାତରୁ ଦୁଇଟି ଆଙ୍ଗୁଠି କାଟି ଚଣ୍ଡୀଙ୍କ ପାଖେ ବଳି ଦେଇଛି । ଅମାବାସ୍ୟା ରାତିରେ କିମ୍ବା ଗ୍ରହଣ ଲାଗିଲେ ଡୁ ଡୁ ମେଘ ଅସରାରେ ଧରମୁ କୁଣ୍ଡ ମଶାଣିକୁ ଯାଏ—କୁକୁଡ଼ା ମାରେ, ନିଜ ଜଙ୍ଘରୁ କାଟି ରକ୍ତ ମଶାଣିଚଣ୍ଡୀଙ୍କୁ ବଳିଦିଏ । ମଣିଷ ମୁର୍ଦ୍ଦାରରୁ ମାଉଁସ କାଟି ସିଝାଇ ଖାଏ । ମଶାଣିରେ ହୋମ କରେ । ଚଣ୍ଡୀଙ୍କି ସନ୍ତୁଷ୍ଟ କରି ଗୁଣିବଳରେ ଅସାଧ୍ୟ ସାଧନ କରେ । ଆହୁରି ବି ଶୁଣାଯାଉଛି ଯେ ଧରମୁ କୁଣ୍ଡ ଯେତେବେଳେ

ପଦ୍ମଲ ଚଣ୍ଡୀସାଧନା ଆରମ୍ଭ କରେ, ସେତେବେଳେ ସେ ନିଜ କଅଁଳା ପୁଅକୁ କାଟି ଚଣ୍ଡୀଙ୍କ ପାଖରେ ବଳି ଦେଇଥିଲି । ସେହିଦିନୁ ତାର ଆଉ ସନ୍ତାନ ଜନ୍ମ ହୋଇ ନାହାନ୍ତି ।

ଧରମୁ କୁଣ୍ଡ ତାରା ସାଧନା ବି ସାଧିଥିଲି । ରାତି ଅଧରେ ହିନ ବାର ଝୋକ ସେ ମନ୍ତ୍ରବଳରେ ସ୍ୱର୍ଗରୁ ତାରାମାନଙ୍କୁ ମଞ୍ଚକୁ ଡାକିଆଣେ ।

ତାରଣ, ମାରଣ, ବଶୀକରଣ ଓ ଉଚାଟନାଦି ବିଦ୍ୟାରେ ଧରମୁ କୁଣ୍ଡକୁ କେହି ବଳି ପାରୁ ନ ଥିଲେ । ବହୁତ ବଡ଼ ବଡ଼ ଗୁଣିଆ ବି ଧରମୁ କୁଣ୍ଡ ସଙ୍ଗେ ବିବାଦ କରି, ହାରିଯାଇ, ଶେଷରେ ତାକୁ ଗୁରୁରୂପେ ମାନିବାକୁ ବାଧ ହୋଇଛନ୍ତି । ଯଦି କୌଣସି ଗୁଣିଆ କାହାକୁ ବିବାଦରେ ବାଉଁଶ ଲଗାଇ ଦିଏ ତ, ଧରମୁ କୁଣ୍ଡ ସେଇ ବାଉଁଶକୁ ଏକା ଫୁଙ୍କାକେ ଉଡ଼ାଇ-ଦିଏ ଓ ଏପରି ମନ୍ତ୍ରକରେ ଯେ, ସେଇ ଗୁଣିଆକୁ ଚଣ୍ଡୀମାନେ ଆଉ ଶୁଆଇ ବସାଇ ଦିଅନ୍ତି ନାହିଁ । ତା ଦେହକୁ ନଖରେ ରାମ୍ପୁଡ଼ି ରାମ୍ପୁଡ଼ି ଅସ୍ତବ୍ୟସ୍ତ କରନ୍ତି ଓ ଶେଷରେ ସେ ଦଉଡ଼ି ଦଉଡ଼ି ଆସି ଧରମୁ କୁଣ୍ଡର ଗୋଡ଼ ଧରେ । ଧରମୁ କୁଣ୍ଡ ବି ବିବାଦୀ ଲୋକଙ୍କୁ ସହଜରେ ଛାଡ଼େନାହିଁ । କାହା ବୋହୂକୁ ଡାହାଣୀ ଲଗାଇ ଦିଏ, କାହା ଭାତ ହାଣ୍ଡିରୁ ଅନବରତ ମଣିଷ ବିଷ୍ଠା ବାହାରେ । କାହା ଦୁଆରେ ହାଡ଼ ବୃଷ୍ଟି ହୁଏ । ଏହିଭଳି ଅଗଣନ ଭୟଙ୍କର କାଣ୍ଡ ଯୋଗୁଁ ତାନ୍ତ୍ରିକ ଧରମୁ କୁଣ୍ଡକୁ କେହି ଉତ୍ୟକ୍ତ କରନ୍ତି ନାହିଁ । ସମସ୍ତେ ତାକୁ ଡ଼ରି ଥରି ଥାଆନ୍ତି ।

ମଲା ଡାହାଣୀକୁ ଧରମୁ କୁଣ୍ଡ ଯେମିତି ଜବତ କରେ—ଗାଁ ଭିତରର କଞ୍ଚା ଡାହାଣୀକୁ ବି ସେ ସେମିତି ମନ୍ତ୍ରବଳରେ ଧରି ଜବତ କରେ । ଥରେ ରାତି ପାହାନ୍ତା ପହରକୁ ଧରମୁ କୁଣ୍ଡ ମଶାଣିରୁ ଫେରୁଛି— ଗାଁ ମୁଣ୍ଡ ଦଣ୍ଡା ପାଖେ ଦେଖେ ତ ଗୁରିପାଞ୍ଚଟା ମାଇକିନା ଲଙ୍ଗଳା ହୋଇ

ହାତ ତଳକୁ କରି ଗୋଡ଼ ଉପରକୁ ଟେକ ମଣିଷ ବ୍ୟବସ୍ଥା ଚରୁଛନ୍ତି । ଧରମୁ କୁଣ୍ଡ ନିଜ ଦେହକୁ ମନ୍ତ୍ରବଳରେ କଳ ସେମାନଙ୍କ ପାଲଟା ଶାଡ଼ୀ ଧରି ଘରକୁ ଗ୍ଲଲ ଆସିଲି ଏବଂ ଏଇ କଞ୍ଚା-ଡାହାଣୀଗୁଡ଼ାକ ସକାଳୁ ଆସି ଧରମୁ କୁଣ୍ଡ ବାଡ଼ରେ ସାଷ୍ଟାଙ୍ଗ ଦଣ୍ଡବତ ହୋଇ ପଡ଼ଗଲେ । ଧରମୁ କୁଣ୍ଡ ଗ୍ରାମର ପାଞ୍ଚ ଜଣ ମୁଖିଆ ଲୋକଙ୍କୁ ଡକାଇ ସେମାନଙ୍କୁ ତତଲି ଲୁହାରେ ଛିଆଁ ଦେଇ ଛାଡ଼ଦେଲି । ଏହି କଞ୍ଚା ଡାହାଣୀଗୁଡ଼ାକ ଗ୍ରାମର ଜୀବନ୍ତ ସ୍ତ୍ରୀଲୋକ । ଏମାନେ ପର ଘରର ପିଲାଙ୍କୁ ଦେଖି ସେମାନଙ୍କୁ ଗୃହ୍ଣିଁ ଗୃହ୍ଣିଁ ସେମାନଙ୍କର ରକ୍ତ ନିଜର ଆଖି ବାଟେ ଶୋଷି ପିଇଯାନ୍ତି । ଫଳରେ ପିଲା-ଗୁଡ଼ାଙ୍କୁ ଝାଡ଼ା ହୁଏ ଏବଂ ସେମାନେ ଅଳ୍ପ ଦିନରେ ମରିଯାନ୍ତି । ସେ ଯାହାହେଉ, ଧରମୁ କୁଣ୍ଡଙ୍କ ଗୁଣୀବଳରେ ଆମ ଗ୍ରାମରେ ଏଇ କଞ୍ଚା-ଡାହାଣୀ ବା ମଲି ଡାହାଣୀଙ୍କ ଉତ୍ପାତ ଆଉ ନ ଥିଲି । ଧରମୁ କୁଣ୍ଡ ଥିଲି ଷୋଳକଳା ଡାହାଣୀକୁ ବଡ଼ଶୀକଳା ଗୁଣିଆ ।

ଖାଲି ଯେ ଭୂତ-ପ୍ରେତଙ୍କୁ ଧରମୁ କୁଣ୍ଡ ଜବତ କରିଥିଲି ତା ନୁହେଁ; ଗୁଣୀଗାରେଡ଼ି ବଳରେ ସେ ବଣର ପଶୁମାନଙ୍କୁ ମଧ୍ୟ ସାଧି କରିଥିଲି । ଲୋକେ ଦେଖିଛନ୍ତି, ସ୍ୱୟଂ ବାଘ ରାତି ଅଧରେ ଧରମୁ କୁଣ୍ଡ ଘରେ ଖାସି-ମାଉଁସ ଦେଇଯାଏ । ମାଙ୍କଡ଼ ପ୍ରତିଦିନ ପଣିବା ଦେଇଯାଏ । ଆଉ ଓଧ ପ୍ରତିଦିନ ମାଛ ଆଣି ଧରମୁ କୁଣ୍ଡର ବୋଷଘର ଭିତରେ ରଖିଦେଇଯାଏ । ଗୁଣୀ-ଗାରେଡ଼ି କରିବାରେ ସେ କାହାଠାରୁ ପଇସାଟିଏ ବି ନିଏ ନାହିଁ । ପଇସା ତାର କଣ ହେବ ? ତାର କ'ଣ ଅଭାବ ଅଛି ? ଦରକାର କେବଳ ଚଣ୍ଡୀପୂଜାପାଇଁ କିଛି ମଦ ବା ଗଞ୍ଜେଇ, ଆଉ କୁକୁଡ଼ାଟିଏ ।

ଧରମୁ କୁଣ୍ଡ କେଉଁଠାରୁ ଏତେ ମନ୍ତ୍ରଯନ୍ତ୍ର ଜାଣିଥିଲି ଜାଣନ୍ତି ? ତାକୁ ଯେତେବେଳେ ଅଠର ବର୍ଷ ବୟସ, ସେତେବେଳେ ସେ ଗ୍ରାମର

ଆଉ ପାଞ୍ଚ ଜଣଙ୍କ ସଙ୍ଗେ କଲିକତା ବଙ୍ଗାଳୀ ବାଡ଼ିରେ ଚାକିରି କରି ପେଟ ପୋଷିବାକୁ ଯାଏ । ତା'ପରେ ବାର ବର୍ଷଯାଏ ଆଉ ତାର ପତ୍ତା ମିଳିଲା ନାହିଁ । ସେ ଯେ କୁଆଡ଼େ ଗଲା ? ସମସ୍ତେ ଭାବିଲେ କଲିକତା ସହରରେ କେଉଁଠି ଗାଡ଼ି ତଳେ ଚାପା ଖାଇ ମରିଯାଇଛି । ଧରମୁ କୁଣ୍ଡିକୁ ସମସ୍ତେ ଭୁଲିଗଲେ ।

ମାତ୍ର ହଠାତ୍ ଦିନେ ତିରିଶି ବର୍ଷର ଭେଣ୍ଡିଆ ଧରମୁ କୁଣ୍ଡି ଆସି ଗ୍ରାମରେ ପହଞ୍ଚିଗଲା । ସେତେବେଳକୁ ସେ ଏଇ କାପାଳିକ ବେଶ ଧରି ସେ ଦେଶରୁ ଆସିଛି । ସେ କହିଲା, ସେ କୁଆଡ଼େ ଦିନେ ଗୋଟେ ବାବାଜୀ ସଙ୍ଗେ କଲିକତାରୁ ଚାଲିଗଲା କାଉଁରିକାମଚଣ୍ଡୀ ଦେଶକୁ । ସେ ଦେଶରେ ଖାଲି ସ୍ତ୍ରୀ । ପୁରୁଷଙ୍କର ଦେଖା ନାହିଁ । ସେଠି ସେଇ ବାବାଜୀ ତାକୁ ଗୋଟେ ମାଇକିନାକୁ ବିକିଦେଲା । ସେ ମାଇକିନା ପୁରୁଷକୁ ଦିନଯାକ ମେଣ୍ଢା କରେ, ଆଉ ରାତିରେ ମନ୍ତ୍ରବଳରେ ପୁଣି ଭେଣ୍ଡା କରିଦିଏ । ସେ ଦେଶରେ, କାମାକ୍ଷାଦେବୀ ହେଉଛନ୍ତି ଅଧିଷ୍ଠାତ୍ରୀ ଠାକୁରାଣୀ । ବହୁତ ଦିନ ଏହିପରି ରହିବାପରେ ସେ ମାଇକିନାର ତଣ୍ଟି ଚିପି ମାରିଦେଲା, ଆଉ ତା' ଘରୁ ସବୁ କାଉଁରି ସାଧନା ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ମାଳା ପୋଥି ସାଥିରେ ଆଣି ଚାଲି ଆସିଲା । ତା'ପରେ ସେ ଦେଶରେ ଗୋଟିଏ ଗୁଣିଆ ପାଖେ ରହି ଏସବୁ ଶିଖି ପୁଣି ଦେଶକୁ ବାହାରି ଆସିଲା ।

ଧରମୁ କୁଣ୍ଡି ବହୁଦିନ ପରେ ଘରକୁ ଆସି ବାହା ହେଲା, ଆଉ ଘରଦ୍ୱାର କରି ରହିଲା । କ୍ରମେ ଧରମୁ କୁଣ୍ଡିର ଗୁଣ ଜଣାପଡ଼ିଲା । ଗ୍ରାମର ଶେଷ ମୁଣ୍ଡରେ ସେ ଗୋଟିଏ ଏକୁଟିଆ ଘର କରି ସେଇଠି ଆସି ସ୍ତ୍ରୀକୁ ଧରି ରହି ତାର ଗୁଣୀ-ଗାରେଡ଼ି ବିଦ୍ୟା ସାଧିଲା । ତା ଘରପାଖ ସାହାଡ଼ାଗଛରେ ଯେଉଁ ଲୁହାକଣ୍ଟାଗୁଡ଼ାଏ ମାରିଚି, ସେଗୁଡ଼ାକ ହେଉଛନ୍ତି ଡାହାଣୀ । ଧରମୁ କୁଣ୍ଡି ଯେତେ ଡାହାଣୀ ଛଡ଼ାଇଛି, ସେଗୁଡ଼ାକୁ ଆଣି ଏଇ ସାହାଡ଼ା ଗଛରେ ବନ୍ଧନ କରି ରଖିଛି ।

ସେ ଯାହାହେଉ, ଧରମୁ କୁଣ୍ଡ ଅଳ୍ପ ଦିନରେ ଗୁଣୀଗାରେଡ଼ି ବିଦ୍ୟାରେ ଗୋଟିଏ ଖଣ୍ଡ ଗାଁରେ ଭାରି ନାମ ଅର୍ଜନ କଲା । ଆହୁରି ମଧ୍ୟ ଗଡ଼ଜାତକୁ ଯାଇ ସେ ରାଜାମାନଙ୍କୁ ନିଜ ବିଦ୍ୟାର କରାମତି ଦେଖାଇ ସେମାନଙ୍କଠାରୁ ପାଟ ଯଥା ଆଉ କୁଣ୍ଡଳ ପୁରସ୍କାର ପାଇଲା ।

କିନ୍ତୁ କଣ ହେଲା ଜାଣିଛନ୍ତି ?

ଧରମୁ କୁଣ୍ଡ ତ ନିଇତି ନୂଆ ନୂଆ ଗୁଣିବିଦ୍ୟା ଶିଖୁଥାଏ । ନୂଆ ନୂଆ ବିଦ୍ୟା ହାସଲ କରି ନିଜର କରାମତି ଦେଖାଇବାକୁ କିଏ ନ ଚାହେଁ ? ଧରମୁ କୁଣ୍ଡ ଭାରି ଆଶ୍ଚର୍ଯ୍ୟ କଥାମାନ ସାଧିଲା । ଶୂନ୍ୟରେ ଭ୍ରମଣ କଲା । ଉଆଁସ ରାତିରେ ଚନ୍ଦ ଦେଖାଇଲା । ପୁନିଆଁ ରାତିରେ ଚନ୍ଦ୍ରକୁ ଗୋପ୍ୟ କଲା । ଗ୍ରାମଦେବତୀଙ୍କୁ ମନ୍ତ୍ରରେ ବନ୍ଧନ କଲା । ଗର୍ଭବତୀ ନାରୀର ଗର୍ଭରୁ ସନ୍ତାନ ହରିନେଲା । ଏହିପରି ଧରମୁ କୁଣ୍ଡକୁ ଦେଖି ଗର୍ଭିଣୀ ଗାଈ ମଧ୍ୟ ଭୟରେ ବାଟ ଛାଡ଼ିଦେଲା ।

ଦିନେ ଧରମୁ କୁଣ୍ଡ ତା ସ୍ତ୍ରୀକୁ ଡାକି କହିଲା—"ଆଗୋ ଶୁଣୁଛ ! ଆଜି ଗୋଟେ ନୂଆ କରାମତି ଦେଖାଇବି ! ମୁଁ ଆଜି ଗୁଣି ବଳରେ ଗୋଟେ ବାଘ ପାଲଟିଯିବି । ବାଘ ହୋଇ ମୁଁ ବଣକୁ ଯିବି ଏବଂ ରାତି ଅଧରେ ଛେଳିଛୁଆ କମ୍ବା ହରିଣଛୁଆ ଶିକାର ଧରି ପୁଣି ଘରକୁ ଆସିବି । ମୁଁ କଂସାବାସନରେ ହଳଦି ପାଣି ମନ୍ତୁରି ଦେଇଯାଉଛି । ମୁଁ ଯେମିତି ଫେରିବି, ତୁମେ ମୋତେ ଦେଖି କିଛି ଭୟ ନ କରି ସେଇ କଂସାକ ମନ୍ତୁରା ହଳଦି ପାଣିରେ ମୋ ଦେହକୁ ପୋଛିଦେବ । ତା'ପରେ ମୁଁ ଠିକ୍ ମଣିଷ ପାଲଟି ଯିବି ।" ତା ସ୍ତ୍ରୀ ପ୍ରଥମେ ଏ କଥା ବିଶ୍ବାସ କରୁ ନ ଥିଲା । ମାତ୍ର ଶିକାର ଲୋଭରେ ଏବଂ ଧରମୁ କୁଣ୍ଡ କଥାର ଜୋର୍‌ରେ ବାଧ୍ୟ ହୋଇ ହଁ ମାରିଲା ।

ଧରମୁ କୁଣ୍ଡ ସତକୁ ସତ ସେଦିନ ବଣକୁ ଗଲା ଏବଂ ବଣଭିତରେ ଗୁଣିମନ୍ତ୍ର ବଳରେ ନିଜକୁ ବାଘ କରିନେଲା । ତା ପରେ ବାଘ ହୋଇ ସେ ଗୋଟିଏ ଛେଳିଛୁଆ ଗ୍ରାମ ମଧ୍ୟରୁ ଗ୍ରେସିଲା । ଛେଳିଛୁଆକୁ ଦାନ୍ତରେ କାମୁଡ଼ି ସେ ତା ବେକ କଣା କରି ରକ୍ତ ପିଇଗଲା ଏବଂ ଛେଳିଛୁଆଟାକୁ ଧରି ସେ ବଡ଼ ଖୁସୀ ମନରେ ଘରକୁ ଫେରିଲା ।

ଅଧରାତି । ସାଇଁ ସାଇଁ ନିଶା ଗର୍ଜୁଛି । ଧରମୁ କୁଣ୍ଡର ସ୍ତ୍ରୀ ସ୍ୱାମୀର ବାଘ ସ୍ୱରୂପକୁ ଅପେକ୍ଷା କରି ବସିଛି । ଏକୁଟିଆ ମାଡ଼ି ମାଡ଼ି ପଡ଼ୁଛି । ଗାଁ ଶେଷ ମୁଣ୍ଡରେ ଘର । ସତରେ କ'ଣ ସେ ବାଘ ହୋଇ ଫେରିବେ, ଅବିକଳ ବାଘ ରୂପରେ ? ସେ ଦେଖିଛି—ଗାଁର ପଠାଣମାନେ ମହରମ ପର୍ବରେ ବାଘରୂପରେ ଶିନ୍ଦ ହୋଇ ଖେଳ ଦେଖାଇ ପଇସା ମାଗନ୍ତି । ସେ ଶିନ୍ଦ ବାଘକୁ ଦେଖିଲେ ବି ଭୟରେ ଦେହ ଥରେ । ସେ କଣ ସେହିଭଳି ବାଘ ଶିନ୍ଦ ହୋଇ ଫେରିବେ ନା ସତକୁ ସତ ମନ୍ତ୍ରବଳରେ ବାଘ ପାଲଟି ଆସିବେ ? ମନ ଭିତରେ କୌତୁକ; କିନ୍ତୁ ଭୟ ବି କମ୍ ହେଉନି ! ଧରମୁ କୁଣ୍ଡର ସ୍ତ୍ରୀ ଘରେ କବାଟ କିଳି ବସିଛି ।

ହଠାତ୍ ବାଡ଼ପଟେ ବାଘର ହେଁଟାଳ ଶୁଭିଲା । ଧରମୁ କୁଣ୍ଡର ସ୍ତ୍ରୀ ଘରେ ଭଲ କରି ଖିଡ଼କି ଲଗାଇ ଦେଇ ଝରକା ବାଟେ ଚାହିଁ ଦେଖିଲା, ଶଣଫୁଲ ପରି ଜହ୍ନ ପଡ଼ୁଛି । ଆଉ ତା'ର ଝରକା ପାଖେ ଦୁଇ ପଞ୍ଝାକୁ ଆଗକୁ ରଖି ବସିରହିଛି ଗୋଟାଏ ବିରାଟ ଶାର୍ଦ୍ଦୁଳ । ଲାଞ୍ଜକୁ ଟେକି ମୁଣ୍ଡର ପଛ ପଟେ ପିଟୁଛି । ଆଗରେ ଗୋଟାଏ କଳା ଛେଳିଛୁଆ ପଡ଼ିଛି । ଝରକା ବାଟେ ତାକୁ ଦେଖି ବାଘଟା ଆତୁର ଗର୍ଜନ କଲା । କୁଦା ମାରି ଝରକା ପାଖକୁ ଆସିଲା । ଘାଉଁ ଘାଉଁ ହୋଇ ଝରକା ପାଖ କାନ୍ଥରେ ଘଷି ହେଲା । ପୁଣି ପଛକୁ ହଟି ଯାଇ ଖାରଠାଣିରେ ବସି ରହି ଘାଉଁ ଘାଉଁ ହୋଇ ହସି ଉଠିଲା । ଓଃ, ସେ କି ବିକଟ ହସ ! ! କି ଭୟଙ୍କର ମୁହଁ ! ଧରମୁ କୁଣ୍ଡର ସ୍ତ୍ରୀ ଭୟରେ ଖାଲି ଥରିବାକୁ ଲାଗିଲା ।

ସେ କ'ଣ ସତରେ ତାର ସ୍ୱାମୀ ନା' ସତକୁ ସତ ଗୋଟାଏ ମଣିଷ ଖିଆ ବଡ଼ ବାଘ ? ସେ ତ ଜାଣେ, ତାର ସ୍ୱାମୀକୁ ଡରି ବାଘ ବି ଦିନେ ଦିନେ ଗ୍ରାମରେ ଆସି ବାରି ପଟେ ଗୋଟିଏ ଲେଖା ଛେଳି ବା ହରିଣଛୁଆ ମାରି ପକାଇ ଦେଇଯାଏ । କାଳେ ଏଇଟା ସେହିଭଳି ଗୋଟାଏ ସତକୁ ସତ ବାଘ ହୋଇଥିବ ।

ମାଇପି ଲୋକ । କବାଟ ଫିଟାଇ ବାହାରକୁ ବାହାରିବା ପାଇ ସାହସ ପାଉନାହିଁ । ସତରେ କ'ଣ ତା'ର ସ୍ୱାମୀ ମନ୍ତ୍ର ବଳରେ ଗୋଟେ ଏଡ଼େ ବଡ଼ ସତ ବାଘ ପାଲଟି ଯାଇଛନ୍ତି ? ନା; ନ ହୋଇ ବି ପାରେ ! ! ସେ କୌଣସି ମତେ କବାଟ ଫିଟାଇ ବାହାରକୁ ଆସିଲି ନାହିଁ ।

ଏଣେ ଧରମୁ କୁଣ୍ଡ ବାଘ ରୂପରେ ବାଡ଼ିତଳେ ଛଟପଟ ହେଲିଣି । ହେଁଟାଳ ମାରୁଛି । ଏତେ କରି କହି ଯାଇଥିଲି ସ୍ତ୍ରୀକୁ । ମୋ ବାଘ ରୂପକୁ ଦେଖି ଭୟ କରିବୁ ନାହିଁ । ମନ୍ତୁରା ହଳଦୀ ପାଣିରେ ମୋ ଦେହ ପୋଛିଦେବୁ । ସ୍ତ୍ରୀ କଥାରେ ବିଶ୍ୱାସ କରି ସେ ବାଘ ରୂପ ହେଲା, ଅଥଚ ଏଇ ମାଇକିନାଟା ଏଡ଼େ ଭୟାଳୁ !

ଧରମୁ କୁଣ୍ଡ ଅଥୟ ହେଲିଣି ! ଇସ୍—କି ଦାରୁଣ ବ୍ୟାପାର ! ରାତି ଯେ ଆଉ ବେଶୀ ନାହିଁ । ଆଉ ଟିକେ ଗଲେ ସକାଳ ହୋଇଯିବ । ସେ ଆଉ ବାଘରୁ ମଣିଷ ହୋଇପାରିବ ନାହିଁ ନା କଣ ? ଅବଶ୍ୟ ସେଇ ହଳଦୀ-ପାଣିରେ ପରଦିନ ବି ଯଦି ତା'କୁ ପୋଛି ଦିଆଯାଏ—ତେବେ ବି ସେ ପୁଣି ମଣିଷ ପାଲଟି ଯା'ନ୍ତା; ମାତ୍ର ଏ ତ ମୂଳରୁ ଭୟ କରୁଛି ଏତେ ! ଧରମୁ କୁଣ୍ଡ ସ୍ତ୍ରୀକୁ ବୁଝାଇବା ପାଇଁ ପାଟି ଖୋଲିଲା । ମାତ୍ର ହାୟ ! ମଣିଷର ବୁଦ୍ଧି ଥିଲେ ବି ବାଘର ଜିଭ ମଣିଷ ଭଳି କଥା କହିପାରେ ନାହିଁ । ତେଣୁ ସେ ଖାଲି ଗର୍ଜ୍ଜନ କଲା । ଘାଉଁ ଘାଉଁ ହୋଇ ଭୂଇଁକୁ ରାମ୍ପୁଡ଼ିଲା, ଘର କାନ୍ଥକୁ ନଖରେ ବିଦାରିଲା, ଝରକା ବାଡ଼କୁ ହାତରେ ଦୋହଲାଇଲା ଏବଂ

ଘର ଭିତରକୁ ମୁହଁ ଦେଖାଇ ଘାଉଁ ଘାଉଁ ହେଲା; ମାତ୍ର ସବୁ ବୃଥା । ତା' ସ୍ତ୍ରୀ କ୍ରମେ ଏସବୁ ଦେଖି ବେଶି ବେଶି ଭୟାର୍ତ୍ତ ହୋଇ ଉଠିଲା ଏବଂ ଆଉ ଝରକାବାଟେ ମୁହଁ ଦେଖାଇ ପଦାକୁ ନ ଗୃହିଁ ସେ ଖଟତଳେ ଲୁଚ ବସିଲା ।

ବାଘ ଧରମୁ କୁଣ୍ଡ ଏଥରକ ରାଗିବାକୁ ଲଗିଲା । ରାତ୍ର ପାହ୍ର ଆସିଲାଣି । ହେଇ, କୁଆମାନେ ବୋବାଇବାକୁ ଆରମ୍ଭ କଲେଣି । ତା'ର ଇଚ୍ଛା ହେଲା, ସେ ଯଦ ତା' ସ୍ତ୍ରୀକୁ କୌଣସି ପ୍ରକାରେ ହାବୁଡ଼େ ପାଆନ୍ତା, ତେବେ ବା' ତଣ୍ଟି ଚିପି ରକ୍ତ ପିଇଯାନ୍ତା ।

ଧରମୁକୁଣ୍ଡ ହିଂସ୍ର ହୋଇ ଉଠିଲା । କଣ ଫୂଲଇ ସେ ଖାଲି ଏଣେ ତେଣେ ଧାଇଁବାକୁ ଲଗିଲା । ବାଡ଼ରୁ ଗଛ ଲତା ଓପାଡ଼ ପକାଇଲା । ହୁଁକାର କଲା ତାର ବାଘର ପଞ୍ଜର ତଳେ ମଣିଷର ଆତ୍ମା ଚିତ୍କାର କର ଉଠୁଛି । ଓଃ ସେ ଶୀଘ୍ର ମଣିଷ ହେବାକୁ ଗୃହେଁ । କେତେ କଷ୍ଟରେ ସେ ମଣିଷ ହୋଇଥିଲା କେତ ଯୋନରେ ଜନ୍ମ ହୋଇ ହୋଇ କେତେକାଳରେ ମଣିଷ ଯୋନରୁ ସେ ଧରମୁ କୁଣ୍ଡ ରୂପରେ ପୃଥିବୀକୁ ଆସିଥିଲା । କେତେ ବଦ୍ୟା ସାଧିଥିଲା । କେତେ ସୁଖ ଭୋଗିଥିଲା, କେତେ ଭାବ ଭାବ ଥିଲା । ଗଲା, ସବୁଗଲା । ନା ନା, ସେ ମଣିଷ ହେବ, ସେ ମଣିଷ ହେବାକୁ ଗୃହେଁ । ସେ ବାଘ ରୂପରେ ଆଉ ବେଶି ସମୟ ରହିପାରିବ ନାହିଁ । ହଁ, ହଁ, ସେ ଏ ବାଘ-ଜୀବନରୁ ମୁକ୍ତ ଗୃହେଁ, ମୁକ୍ତ ମୁକ୍ତ··· ଓହୋ···ଓ···ଓ ! ତାର ଜଳନ୍ତା ବାଘ ଆଖି ଭିତରୁ ମଣିଷର ଲୁହ ବୋହିଲା । ସେ କ ଆଉ ମଣିଷ ହୋଇ ପାରିବ ନାହିଁ ?

ହୋଇପାରିବ ନାହିଁ ? ? ?

ରାତ୍ର ପାହ୍ର ଆସିଲାଣି । ଆଉ ପାଞ୍ଚ ମିନଟ । କୁଆ ବୋବାଇଲେଣି । ବାଘରଶରୀର ଭିତରେ ଧରମୁକୁଣ୍ଡର ମଣିଷ ଆତ୍ମା ଖାଲି ଛଟପଟ ହେଉଛି ।

ହାୟ ! ସେ କି ଆଜିଠାରୁ ଖାଲି ବାଘଟିଏ ହୋଇ ରହିବ ? ଏଇ ଘର, ଏଇ ପିଣ୍ଡା, ଏଇ ଗଛ, ଏଇ ଗାଁ, ଏଇ ନଈ,ଏଇ କୂଅ, ଏଇ ଶାଗପଟାଳୀ ଏଇ ତୁଳସୀ ଚଉରା, ତାର ସ୍ତ୍ରୀ, ଆଉ ଶେଷରେ ଏଇ ଘର ଭିତରେ ତାର ମନ୍ତ୍ରଯନ୍ତ୍ରମାଳର ଗୁଣି-ଗାରେଡ଼ୀ ପୋଥିସବୁ । ହାୟ ! ଜୀବନ ଥାଉ ଥାଉ ସେକି ଆଉ ଏ ଗୁଡ଼ିକର ପାଖେ ପଶିବ ନାହିଁ ! ହାୟ ! ତା' ସ୍ତ୍ରୀ ବ୍ୟତୀତ ସେ ଯଦି ଆଉ କାହାକୁ ଏ ମନ୍ତ୍ରର ପାଣି କଥା କହିଥାନ୍ତା ! ତେବେ ଆସନ୍ତା କାଲି ପାଇଁ ଅନ୍ତତଃ ସେ ଆଶା ରଖି ବସନ୍ତା; କିନ୍ତୁ ସେ ତା ସ୍ତ୍ରୀକୁ ବା ଆଉ କିପରି ବୁଝାଇବ ? ଓହୋ— ଃ ଃ ଃ !

ବାଘ ଧରମୁ କୁଣ୍ଡ ଖାଲି ବିଦାରି ହେଲା ।

ସେ ଆଉ ମଣିଷ ନୁହେଁ ? ସେ ଆଉ ନିଜର ବେଦନା ମଣିଷର ଭାଷାରେ ମଣିଷକୁ ବୁଝାଇ ପାରିବ ନାହିଁ ! ବାଘ ରୂପରୁ ପୁଣି ମଣିଷ ରୂପକୁ ଫେରି ଆସିବାର ମନ୍ତ୍ର ସେ ଆଉ କାହାକୁ ଶିଖାଇ ପାରିବ ନାହିଁ ! ସେ ବ୍ୟୂହ ମଧ୍ୟରେ ପଶିଗଲା; ମାତ୍ର ଏ ବ୍ୟୂହ ମଧ୍ୟରୁ ତାକୁ କିଏ ମୁକୁଳାଇବ ? ଓଃଃଃ ! ସେ କି ଆଉ ମଣିଷ ହେବ ନାହିଁ ।

ସେ ବାଘ ? ?

ସେ ବାଘ ? ? ?

ରାତି ପାହିଗଲା । ଧରମୁ କୁଣ୍ଡ ଶେଷଥର ପାଇଁ ଚେଷ୍ଟାକଲା । ହେଁଟାଳି ମାରି ଗର୍ଜନ କରି, ଲାଞ୍ଜ ପିଟି, କୁଦା ମାରି, ସେ ତାର ଘର ଗୁରିପଟେ ବୁଲିଆସି ଝରକା ପାଖେ ଆସି କଣ୍ଟାଳ କଲା । କେତେ ଅନୁନୟ ବିନୟ କଲା । ସ୍ତ୍ରୀକୁ କେତେ ନିର୍ଭର ବାଣୀ ଶୁଣାଇଲା, କେତେ ଅଶ୍ରୁଳ ନିବେଦନ ଜଣାଇଲା, ମାତ୍ର ସବୁ ବୃଥା । ତାର ସମସ୍ତ ମଣିଷଭାବ କେବଳ ପ୍ରକାଶ ପାଇଲା ବାଘର ଭୟଙ୍କର ଗର୍ଜନ ତର୍ଜନ ଓ ଡିଆଁ ଡେଇଁରେ ।

ତା' ସ୍ତ୍ରୀ ଶେଷଥର ପାଇଁ ଝରକା ପାଖକୁ ଆସିଲା । ରାତି ପାହି ଆସିଲାଣି, ତଥାପି ଅନ୍ଧାର ଅଳ୍ପ ଅଛି ଦେଖିଲା, ବାଘଟା ତାର ଆଡ଼କୁ କଟମଟ କରି ଚାହିଁ ଝରକା ଆଡ଼କୁ ମାଡ଼ ଆସୁଛି । ଧରମ୍ମୁ କୁଣ୍ଡ ତାର ବାଘ ଆଖିକୁ ନିଜ ସ୍ତ୍ରୀ ଆଖି ସଙ୍ଗେ ମିଳାଇଲା । କେଡ଼େ ବିକଳ ହୋଇ ଘାଉଁ ଘାଉଁ ହେଲା ।

ସାହାସ ଧରି ତା ସ୍ତ୍ରୀ ହଳଦୀପାଣି କଂସାକୁ ହାତରେ ଧଇଲା । ଧରମ୍ମୁ କୁଣ୍ଡ ଆନନ୍ଦରେ ଅଧୀର ହୋଇ ଉଠିଲା । ଲଞ୍ଜ ଟେକି ସେ ଖାଲି ଝରକାର ବାଡ଼ ଧରି ଝରକାରେ ମୁହଁକୁ ଘଷିଲା, ଆଉ ଘାଉଁ ଘାଉଁ ହେଲା । "ଆସ, ଆସ, ମୋ ରାଣୀଟା ପରି ! ଭୟ ନ କରି ବାହାରକୁ ଆସ । ଆସ, ଆସ, ଜଲଦି ଆସ, ରାତି ପାହି ଆସିଲାଣି, ଜଲଦି ଆସ, ହଳଦୀପାଣିରେ ମୋ ଦେହ ପୋଛିଦିଅ । ଓଃ ଆସ-ଆସ-ଆସ ! ତୁମ ଗୋଡ଼ ଧରୁଚି, ଆସ ! ଆସ !" ମାତ୍ର ହାୟ !

ହଳଦୀପାଣି କଂସାକୁ ଦେଖି ଧରମ୍ମୁ କୁଣ୍ଡର ଏତେ ଚଞ୍ଚଳତା ଓ ଆଶାପ୍ରବଣତା ଏଇ ବାଘ ରୂପରେ ପ୍ରକାଶିତ ବା ହୁଅନ୍ତା କପରି ! ତାର ସ୍ତ୍ରୀ ଭୟରେ ବୁଦ୍ଧି ଶୂନ୍ୟ ହୋଇ କିଛି ଆଗପଛ ନ ବିଚାରି ସେଇ ଝରକା ବାଟେ ମନ୍ତୁରା ହଳଦୀପାଣି କଂସାକ ତା ଉପରକୁ ଫୋପାଡ଼ିଦେଲା । କଂସାକ ଯାକ ପାଣିରୁ କେତେ ଅଳ୍ପ ଟୋପା ପାଣି ବାଘ ଦେହରେ ପଡ଼ିଲା ଓ ଆଉ ସବୁ ସେଇ ଝରକା ତଳେ ଭୂଇଁରେ ଢାଳିଗଲା ।

ସଙ୍ଗେ ସଙ୍ଗେ ଧରମ୍ମୁ କୁଣ୍ଡ କେଡ଼େ ବିକଳରେ ସେଇ ଭୂଇଁ ଉପରେ ପଡ଼ିଗଲା । ମାତ୍ର ବୃଥା । ବାଲି ଜାଗାରେ ପାଣି ସବୁ ବାଲି ପିଇ ଯାଇଥିଲା ।

ପୂର୍ବଦିଗରେ ପ୍ରଭାତର ସୂଚନା । ସୂର୍ଯ୍ୟୋଦୟର ଆଭାସ ଦେଖାଗଲା । ବାଘ ଧରମ୍ମୁ କୁଣ୍ଡ ଘାଉଁ ଘାଉଁ ହୋଇ ଜନବସତି ଛାଡ଼ି ବଣକୁ ପଳାଇଲା ।

ସେ ଆଉ କୌଣସିମତେ ବାଘରୁ ମଣିଷ ହୋଇ ପାରିବ ନାହିଁ ।

କିଛିଦିନ ପରେ ଲୋକେ ଶୁଣିଲେ ଯେ ବଣ ଭିତରେ ଗୁଣୀ କରୁ କରୁ ଗୁଣିଆ ଧରମୁ କୁଣ୍ଡିକୁ ଚଣ୍ଡୀ ଖାଇଗଲେ ।

ତାର ସ୍ତ୍ରୀ ମଧ୍ୟ କିଛିଦିନ ପରେ ମରିଗଲା । ଆଉ ତାର ବଂଶରେ କେହି ନାହାନ୍ତି ।

ତାର, ମନ୍ତ୍ର, ଯନ୍ତ୍ର, ତନ୍ତ୍ରମାଳା ପୋଥିସବୁ ଯେପରି ତାର ଘର ମଧ୍ୟରେ ଅନେକ ଦିନ ଧରି ରହିଥିଲା; ମାତ୍ର ଆଉ କେହି ସାହାସ କରି ସେ ପୋଥିର ପାଖ ମାଡ଼ିଲେ ନାହିଁ କାରଣ ଏକଥା ନିଶ୍ଚିତ ଯେ ଗୁଣୀ-ଗାରେଡ଼ି କରିବା ବ୍ୟକ୍ତିର ବଂଶରେ କେହି ରହନ୍ତି ନାହିଁ । ଧରମୁ କୁଣ୍ଡିର ବଂଶକୁ ଚଣ୍ଡୀ ଖାଇଗଲା ପରି, ଚଣ୍ଡୀ ସେହି ଗୁଣିଆର ବଂଶ ଲୋପ କରି ଦିଅନ୍ତି ।

ବର୍ତ୍ତମାନ ସେ ପୋଥି ସବୁରୁ କେତେକ ଉଈମାନେ ଶେଷ କରି ଦେଲେଣି ଏବଂ କେତେକ ପୋଥି ଧରମୁ କୁଣ୍ଡିର ଦୂରସଂପର୍କୀୟ ଭାଇ ହରି କୁଣ୍ଡି ପାଖରେ ଅଛି ବୋଲି କେତେକ କହନ୍ତି । ହରି କୁଣ୍ଡି ମନ୍ତ୍ରସାଧକ ନୁହେଁ । ତେଣୁ ତା' ପାଖେ ସେ ପୋଥିମାନ ଥିଲେ ବି ସେ କିଛି କରିପାରିବ ନାହିଁ, ମାତ୍ର ଧରମୁ କୁଣ୍ଡିକୁ ବାଘ ଯନ୍ତ୍ରଣାରୁ ମୁକ୍ତିଦେବାର ଆଶା ଭବିଷ୍ୟତରେ ମଣିଷ ସମାଜର ନିଷ୍ପତ୍ତି ଅଛି । ଧରମୁ କୁଣ୍ଡିକୁ ବାଘର ଖୋଳପା ଭିତରୁ କାଢ଼ି ଆଣିବାର ଦାୟିତ୍ୱ ବର୍ତ୍ତମାନ ସମଗ୍ର ମନୁଷ୍ୟ ସମାଜର । ଧରମୁ କୁଣ୍ଡି ମଣିଷ ହୋଇ ମରିଗଲେ ତାର ଘଟ ପରିବର୍ତ୍ତନ ପାଇଁ ଆମର ଚିନ୍ତା କରିବାର କିଛି ନ ଥିଲା—ମାତ୍ରମଣିଷ ଧରମୁ କୁଣ୍ଡିକୁ ବାଘ କରି ଛାଡ଼ି ଦେଇ ଆମେ ନିଶ୍ଚିନ୍ତରେ ରହିପାରିବା କି ଉଚିତ ହେବ ବୋଲି ଆପଣ ଭାବୁଛନ୍ତି । ଆମେ କଣ ମଣିଷବଂଶ ଲୋପ କରି ବାଘବଂଶ ବଢ଼ାଇବା ! ତା ଛଡ଼ା କ୍ଷଣିକ ଦୁର୍ବଳତାରେ ଧରମୁ କୁଣ୍ଡି ବାଘ ହୋଇ ଯାଇଥିଲା ସତ, ମାତ୍ର ସେ କି ସେଇ ବାଘମେଳରେ ବାଘରୂପରେ

ଆନନ୍ଦରେ ଅଛି ବୋଲି ଆପଣ ଭାବୁଛନ୍ତି ? ସେ ଖାଲି ଛଟପଟ ହେଉଛି । ବାଘର କଙ୍କାଳ ତଳେ ଧରମୁ କୁଣ୍ଡିର ମଣିଷଆତ୍ମା ନୀରବରେ ଚିତ୍କାର କରୁଛି, ସେ ବାଘରୁ ମଣିଷ ହେବାକୁ ଚାହେଁ ।

ବହୁଦିନ ଗତ ହୋଇ ଗଲାଣି । ଏ ମୋ ପିଲାଦିନର ଗଳ୍ପ । ଧରମୁ କୁଣ୍ଡିକୁ ମୁଁ ନିଜେ ସ୍ୱଚକ୍ଷୁରେ ଦେଖିନାହିଁ; ମାତ୍ର ଶୁଣିଛି, ମୋତେ ଛଅବର୍ଷ ବୟସବେଳୁ ଧରମୁ କୁଣ୍ଡିର ଏଇ ଶୋଚନୀୟ ପରିଣତି ମୋର ହୃଦୟକୁ କରୁଣାର୍ଦ୍ର କରି ରଖିଛି । ଏବେ ବି ଦିନେ ଦିନେ ଏକାକୀ ଗ୍ରାମ-ପଥରେ ସନ୍ଧ୍ୟା ଭ୍ରମଣରେ ବାହାରିଲାବେଳେ ମୋର ମନେହୁଏ—ଧରମୁ କୁଣ୍ଡି ସତେ ବା ସେହି ବାଘ ରୂପରେ ଏବେ ବି ଗାଁ-ଗହଳି ଆଉ ବଣ-ଜଙ୍ଗଲରେ ଲୁଚି ଲୁଚି ବୁଲୁଛି, ଆଉ ବିକଳରେ ମଣିଷ ସଙ୍ଗେ ମିଶି ନିଜର ଦୁଃଖ ସେମାନଙ୍କୁ ଜଣାଇବ ବୋଲି, ବାଘର ଆଖିରେ ବି ଅତି କରୁଣ ଦୃଷ୍ଟିରେ ମଣିଷକୁ ଦୂରରୁ ଚାହିଁ ଚାହିଁ ବାଡ଼ କଡ଼େ କଡ଼େ ପାହୁଣ୍ଡ ପକାଇ, ଛପି ଛପି, ଜହ୍ନ ଆଲୁଅରେ ଗଛତଳେ ଶୁଖିଲା ପତ୍ର ଉପରେ ଧୀରେ ଧୀରେ ଖସ୍ ଖସ୍ କରି ମୋ ସଙ୍ଗେ ସଙ୍ଗେ ପଦ ମିଳାଇ ଚାଲିଛି ।

ମୋର ଭୟ ହୋଇଛି ଏବଂ ଚାରିଦିଗ କରି ନିରୀକ୍ଷଣ କରି ଦେଖିଲାବେଳକୁ ମୁଁ ବୁଝିପାରିଛି ଯେ, ମୋରି ଛାଇ ଦେଖି ଓ ପଦଶବ୍ଦ ଶୁଣି ମୁଁ ଚମକି ପଡ଼ୁଛି କେବଳ; ମାତ୍ର ମୋର ବି ସନ୍ଦେହ ହୋଇଛି—ମୋ ଛାଇଟା ସଙ୍ଗେ ବଣ ବାଘ ଧରମୁ କୁଣ୍ଡିର କିଛି ସମ୍ପର୍କ ଅଛି ।

ସେ ଯାହାହେଉ, ମୁଁ ଆଜି ସମଗ୍ର ମନୁଷ୍ୟ ସମାଜ ଆଗରେ ଧରମୁ କୁଣ୍ଡି ପାଇଁ ଅନୁରୋଧ କରୁଛି—

"ଧରମୁ କୁଣ୍ଡିକୁ" ବାଘରୁ ମନୁଷ୍ୟ କରାଯିବାର ବନ୍ଦୋବସ୍ତ ଶୀଘ୍ର ଆରମ୍ଭ କରାଯାଉ ।

———

ଶ୍ରୀ ଚନ୍ଦ୍ରଶେଖର ରଥ

# ଅସବର୍ଣ୍ଣ

ନେଭ ସିଂ ସେଦିନ ମୋତେ ଆସି ଭାରି ଗୁପ୍‌ଚୁପ୍‌ରେ କହିଥିଲା ଯେ 'ବୁଢ଼ୀଖମାରି ରାସ୍ତା ମୋଡ଼ ଉପରକୁ ସେ ନୂଆ ଜାମୁ ଗଛଟାରେ ବହୁ ହରଡ଼ ଚଢ଼େଇ ଆସି ବସିଛନ୍ତି । ସେଥିରୁ ଦଶ ପଚିଶ ପଟକେଇ ଆଣିଲେ ବେଶ୍ ଚାରିଦିନ ଭାତ ଖର୍ଚ୍ଚ ଉଠିଯିବ । ନୂଆ କାନ୍ଦୁଲ ଛୁଇଁ ସବୁ ଚଣା ଧରି ଆସିଲାଣି । ଶୀତ ଗହକ ଆସିଲାବେଳକୁ ହରଡ଼ ଚଢ଼େଇର ସୁପ୍‌ସୁପିଆ ଭଜାଟା ଉହ୍ମେଇ ଉଷୁମ୍ ସାଙ୍ଗକୁ ବଢ଼ିଆ ଯାଗ ଦବ । ତା'ପାଇଁ ଗରାଖ ବି ଅନେକ !'...ମୁଁ ଆଉ କିଛି ନ ଭାବି ତା'ର ପୁରୁଣା ଟୋପିଦାର୍ ବନ୍ଧୁକ ପାଇଁ ଛର୍ରା ଖର୍ଚ୍ଚ ଯୋଗାଇ ଦେଇଥିଲି ।

ନେଭ ସିଂ ପେଶାଦାର ଶିକାରୀ । ତା'ର ମଳ କୋଟଟି ଖାକି ହାଫ୍‌ପେଣ୍ଟ ସାଙ୍ଗକୁ ବହୁ ପ୍ରକାର ମୁଣା ଥିବା ଖଣ୍ଡେ ବୁସ୍‌ସାର୍ଟ ଆମ ସମସ୍ତଙ୍କ ପାଇଁ ଅନେକ ଦିନର ପରିଚିତ ଜିନିସ । ତା'ର ଠିଆ ଠିଆ ତମ୍ବାଳିଆ ବାଳ ଓ ଦି'ଚାରିଟା ଗ୍ରାମୁଦାନ୍ତ ଥିବା ମୁହଁରେ ଖଣ୍ଡେ ବଢ଼ ଆମେ କେଉଁକାଳୁ ଦେଖି ଆସୁଛୁ । ତା' ମନେନାହିଁ । ସେ କେତେଥର ଆମ ପିଣ୍ଡାରେ କୁଟୁରା ମାଂସ ଭାଗ ପକେଇଛି । କେତେବେଳେ ବା ପିଲାଙ୍କ

ଆଲରେ ଦେଇଯାଇଚ ମାହାଳିଆ ମାଂସ ଭାଗେ ବା ହଂସବାଳିଟାଏ । କେବେ କେମିତି ପୁଣି ପଇସା ନେଇ ଝିଙ୍କ କାଠି ଗୋଛାଏ, ଗଧୁଲ ଶିଙ୍ଗଟାଏ ନ ହେଲେ ବାର୍‌ହା ବାଲ କେରାଏ ଦେଇ ଯାଇଛୁ ।

ନେତ୍ର ସିଂ ଆମ ବାପାଙ୍କୁ ଆଲଖେଳ ଶିଖେଇଛୁ, ଘୁଡ଼ି ଉଡ଼େଇବା ଶିଖେଇଚ । କାଚଗୁଣ୍ଡ ବେଲ ଅଠାର ଘୋଟଦିଆ, ଲୁଗାପର ଦାଡ଼ି, ଲୁହା ତାର ପର ଟାଆଁସା ସୂତା ନଟିଆରେ ଗୁଡ଼େଇ ତା'ର ରାବଣ ମାର୍କା ପତାଙ୍ଗିରେ ସେ ବହୁ ପ୍ରତିଦ୍ୱନ୍ଦୀଙ୍କୁ କଟିସ୍‌ରେ ଜଣିଚ । ସେ ସମୟର ଅନେକ ତରୁଣଙ୍କର ଈର୍ଷାର ନାୟକ ନେତ୍ର ସିଂ କିନ୍ତୁ ଜୀବନରେ କିଛୁ ହୋଇ ପାରିନାହିଁ । ଅମାନିଆ ବଣ ଲଇଟାଏ ପରି ଗୁଡ଼ାଏ କାନକୋଳି କଣ୍ଟାରେ ଲଟେଇ ହୋଇ, ବହୁ ବୁଦାରେ ଛନ୍ଦି ହୋଇ ମାଟି କାମୁଡ଼ି ପଡ଼ିଛୁ । ପଇସାବାଲି ଯୁବକଙ୍କ ଦାନ୍ତ ସନ୍ଧାରୁ ଓଟାର ଆଣି ସେ କମଳା ବନିକୁ ନଜର କରିବାକୁ ଚେଷ୍ଟା କରିଛୁ; କିନ୍ତୁ ନକିରା ତାକୁ ଖୁବ୍ ଖୁନିଶା ଖୁଆଇଚ; ଆଶା ବେହେରା ପାଇଁ ସେ ତିନିମାସ ଜେଲ୍ ଭୋଗିଛୁ, ଖୁବ୍ ଗରମ ବେଳାରେ ସେ କସାନ୍ ଅଗ୍ରଓ୍ୱାଲ୍‌ର ମୁଣ୍ଡ ଫଟେଇ ତା' ଘରୁ ମୋତି ସାହୁକୁ ଆଣି ପାଖରେ ରଖିଛୁ ।······କିନ୍ତୁ ହରେଇଛୁ ସମସ୍ତଙ୍କୁ । ମୋତି ତା' ପାଖରେ ପାଞ୍ଚବର୍ଷ ରହି ତାକୁ ଦେଇଛୁ ଅଜସ୍ର ଗାଳି ଓ ତିନିଟି ଛୁଆ, ପାଇଛୁ ଅଜସ୍ର ମାଡ଼ ଆଉ ଖିଆଲି ନେତ୍ର ସିଂର ନିଶା ଜର ଜର କିଛୁ ଓଠଧରା ସୁଆଗ । ମୋତି ଦିନେ ହଠାତ୍ ମରିଯିବା ପରେ ନେତ୍ର ସିଂ ଝିମି ଖାଇଯାଇଚ । ଭେକ ବକଳରେ ସେ ଖଣ୍ଡେ ଟୋପିଦାର ବନ୍ଧୁକରେ ତା ପରିବାରଟାକୁ ପାଳି ଆଣିଛୁ ।

ସେ ନିଶାଖାଏ । ଆଇଁଷ ନ ହେଲେ ଭାତ ଖାଏନା । ତା' ପିଲାଏ ଅନାବନା ଗଛପରି ବଢିଛନ୍ତି, ଅନାବନା ଶାଗ ଖାଇଛନ୍ତି; ବାପ ହୋସ୍‌ରେ ଥିଲେ ତା ହାତରେ ଖୁବ୍ ଭାତ ମାଉଁସ ବ ଖାଇଛନ୍ତି । ବଡପୁଅ 'ପହଲି'

ଏବେବି ବାଲିମେଲା ଜଙ୍ଗଲ କଣ୍ଟ୍ରାକ୍ଟରର ପାଖରେ କ୍ଲିନର କାମ କରେ । ବାପଠୁ ସେ ଏବକୁ କୋଡ଼ିଏ ବର୍ଷ ହେଲା ଅଲଗା । ସାନପୁଅ 'ଫଗୁ' ମଦଭାଟିରେ ଜଣକ ଉପରେ ଛୁରୀ ଚଳେଇ ଦେଇ ଫେରାର ହେବାର ମଧ ଦଶବର୍ଷ ହେଇଗଲା । ଝିଅ 'କୁମ'କୁ ତା' ଅଣ୍ଡିରା ବାଡ଼େଇ ମାରିଦେଲା । ଗୋଟିଏ ନାତି ପାଞ୍ଚବର୍ଷର, ଆଉ ଗୋଟିଏ ନାତୁଣୀ ଚାରିବର୍ଷର, ଆସି ଅଜା ପାଖରେ ଆଦର ପାଇଚନ୍ତି । ନେତ୍ର ସିଂର ପରିବାର କହିଲେ ଏଇ ଦୁଇଟି ଛୁଆ ଆଉ କିଛି ସ୍ମୃତି ।

ସେଦିନ ନେତ୍ର ସିଂ ଛତର୍ ଖଟର୍ ମୁଣ୍ଡାରେ ପୂରେଇ ଟିକିଏ ଆନମନା ହେଇ ଠିଆ ହେଲା । ତାର ବହୁ ପାଣି ପବନ ଖିଆ କାଠଛେଲା ପରି ମୁହଁରେ ଅଳ୍ପ ଟିକିଏ ହସ ଲାଗିଲାପରି ଦିଶିଲା ।

"କଣ ନେତ୍ର କକା (ଆମ ବାପାଙ୍କ ବାଲ୍ୟବନ୍ଧୁ ହିସାବରେ) ଆଉ କ'ଣ ଖବର ?

ମନ ହେଲେ ନେତ୍ର ସିଂ ବହୁ ବହୁ କଥା କହେ । ଶାଳବଣୀର ବାଘ କଥା, ଝରଣା ପାଣିର କାନ୍ଦୁରା ଭାଲୁ କଥା । ପ୍ରତ୍ୟେକ ପଶୁପକ୍ଷୀଙ୍କର ଆଖିରେ ଦେଖିବା କଥା । ମୁଁ ସେଇଆ ଆଶା କରି କଥା ଉଖୁରେଇଲି ।

"ଆଜି ବହୁଦିନ ଉତ୍ତାରୁ ବା'ଲୁ ସାଙ୍ଗେ ଦେଖା ହେଇଗଲା ।" ମୋ ମୁହଁରେ ପଚାରିଲା ଭଙ୍ଗୀ ଦେଖି ସେ ଟିକିଏ ହସିଦେଲା । କେମିତି ଅଲାଜୁକ ହସଟିଏ, ଅନେକ ଦିନରୁ ପେଡ଼ି ସାଇତା ହୋଇଥିବା ଲେସ୍ତ କୋସ୍ତ ପାଟ କଲା ପରି ।

ହଠାତ୍ ମୋର ସବୁ ମନେ ପଡିଗଲା, ବହୁବାର ଶୁଣିବା କଥା ତ ! ଓ—ବାଲୁ ତା'ହେଲେ ସେଇ—ସ୍କୁଲକୁ ଯିବା ବାଟରେ ଯାହାକୁ ସାଙ୍ଗରେ ଧରି ନେତ୍ର ସିଂ ବରଗଛ ଡାଳ ଉପରେ ସାରା ଦି' ପହର ବସେଇ ଦେଉଥିଲା ।

"ଆଚ୍ଛା, ଆଚ୍ଛା ! କେମିତି ଦେଖା ହୋଇଗଲା ? ସେ ଏବେ କେଉଁଠି ଅଛନ୍ତି ? (ବାପାଙ୍କ ସମବୟସୀ ହେବୁ ମାନମ୍ପାପ୍ନ) "ସେ ବହୁ ରାଜ୍ୟ ବୁଲି ଆସିଲେଣି । ରାନ୍ଧୁଣିଆ କାମ କରି ବହୁ ବାବୁଙ୍କ ପାଖରେ ରହିଛି । ସୁନ୍ଦରଗଡ଼ର ଗୋଟେ ଡପୁଟି କଥା କହୁଥିଲି ଯେ ସେଇଟା ମନେ ପଡ଼ିଗଲା ।"

କାନ୍ଥକୁ ଆଉଜି ବସିଗଲା ନେତ୍ର ସିଂ । ବସିଲେ ସେ କେତେ-ବେଳେ ପାଣ୍ଡିଆ ପକାଏ ନାହିଁ । ସେମିତି ଠିପେଇ ବସେ । ଖଣ୍ଡେ ବିଡ଼ି ଲଗେଇ ଆରମ୍ଭ କଲା—

"କଥା କ'ଣ କହିଲେ, ସେ ଲୋକଟା ପିଲା । ବଅସ ତିରିଶଟା, ହେଲେ ପିଲା ନୁହେଁ ତ ଆଉ କ'ଣ ? ବିଭା ହବାକୁ ସେ ରାଜି ହଉନାହିଁ । ଘର ମର୍ଦାମା ମଣିଷ ବଡ଼େ ହୋଇଥିବ । ଆମ ବାଲୁ ଯାଇ ତା'ର ପାଖରେ ଜୁଟିଲା ରାନ୍ଧୁଣିଆ ହେଇ । ବାବୁର ଅନେକ ମାଇକିନିଆ ସାଙ୍ଗ ଭିତରୁ କାହାକୁ ହେଲେ ବାଲୁ ସହିପାରେ ନାହିଁ । ତା'ର ସେ ସଉତୁଣିଆ ସ୍ୱଭାବ ଏପର୍ଯ୍ୟନ୍ତ ମଧ୍ୟ କଟିଲା ନାହିଁ ।"

ମୁଁ ଟିକିଏ ହସିଲି । ନେତ୍ର ସିଂ ଆଉ କଳେ ଧୂଆଁ ପାଟିରେ ପୂରେଇ ଆଖି କୁଣରୁ ମୁରୁକି ମାରିଲା ।

"ବାଲୁଟାକୁ ତମେ ସବୁ କେହି ବୁଝି ପାରିବ ନାହିଁ । ମଣିଷଟାର ମନ ଗହନ ଭେଦି ଯିବାକୁ ବାଲୁ ଓସ୍ତାଦ୍ । ଦିନ ଯୋଡ଼ାକ ଭିତରେ ସେ ତୁମକୁ କଳି ଦେବ । ତା'ପରେ ଆଉ କିଛି ଚିନ୍ତାନାହିଁ । ଯେତେବେଳେ ଯାହା ମନ କରିବ, ବାଲୁ ତା' ଆଗରୁ ଜାଣି ରେଡ଼ିକରି ରଖିଥିବ । ଗାଈ-ଗୋରୁ ଜୀବଜନ୍ତୁଙ୍କ ମନ ମଧ୍ୟ ସେ ବୁଝେ । କେତେଦିନ ଗୋଟାଏ ବିଲେଇ ପୋଷିଥିଲା ବାଲୁ । ···ସେଇଟା ସାଙ୍ଗରେ ସେ କଥାବାର୍ତ୍ତା କରି ପାରୁଥିଲା;

ମାସ ତାକୁ ସାପ ଦଂଶିଦେଲା । ସେଇଦିନୁ ବାଲୁ ଆଉ ଜନ୍ମ ପାଳିଲା ନାହିଁ । ······ଦିନକର କଥା । ସୁନ୍ଦରଗଡ଼ର ସେ ବାବୁ ତାକୁ ଦେଇଥାଏ ଟଙ୍କା ବଜାର ସଉଦା ଆଣିବାକୁ । ବାଲୁ ଆଣି ପହଞ୍ଚେଇଲା କ'ଣ ଜାଣ ? ଦିଲେ ଠେକୁଆ । ଅଣ୍ଡିରାଟାଏ, ମାଈଟାଏ । ଦ'ଟାଯାକ ଧୋବ । ଘର କୁନୁମୁନିଆ ଜୀବ ଏ ଠେକୁଆଗୁଡ଼ା । ହାତ ଉଠିବ ନାଇଁ ମାରିଦବାକୁ । ସେ ବାବୁ ଜଣକ ବି ଘର ବଢ଼ିଆ ଲୋକ । ଗୋଟାକୁ ଡାକିଲା 'କୁନ୍' ଓ ଆରଟାକୁ 'ମୁନ୍' । କିଛିଦିନ ସେ ଯୋଡ଼ିକର ବାପ ହେଲେ ସେ ବାବୁ, ଆଉ ମା' ଆମ ବାଲୁ । ଦୁହେଁମିଶି ସେ ଠେକୁଆ ଯୋଡ଼ିକୁ ଫୁଲପରି ତୋଳି ଧରିଥାନ୍ତି । କୁନ୍ ମୁନ୍‌ଙ୍କୁ ପାଖରେ ନ ଥୋଇଲେ ବାବୁ ଭାତ ଖାଏନାହିଁ । ବାଲୁକୁ ଆଉ ସୃଷ୍ଟି ଦିଶେ ନାହିଁ । ସେ ନିଜକୁ ଭୁଲିଯାଇ ତିନିଜଣଙ୍କ ସେବାରେ ଲାଗିଥାଏ, ତେଣିକି ଯାହା ହବାକଥା ହେଲା ।···ମୁନ୍‌ର ଛୁଆ ହେବ । ବାଲୁକୁ ମହା ହଇରାଣ ପଡ଼ିଗଲା । ବାବୁକୁ ଏଡ଼େ ଲାଜ କଥା ପାଟି ଫିଟେଇ କହେ କେମିତି ? ତଥାପି ନ କହିଲେ ନ ଚଳେ ଭାବି କହିଦେଲା ଅଧେ ଠାରରେ ଅଧେ ମୁହଁ ଘୋଡ଼େଇ । ବାଲୁ ସେମିତି ଲାଜ କରୁଥିଲା-ବେଳେ ହିଁ ସମସ୍ତଙ୍କୁ କାବୁ କରେ ।

"ସେ ବାବୁ ଜଣକ ଯାଇ ଦେଖିଲାବେଳକୁ ମୁନ୍ ଗଡ଼ ଗଡ଼ କୁନ୍ଥଉଛି । ବାବୁକୁ ଏ ସବୁ ନୂଆ । ଆବାକାବା ହୋଇ କିଛି ସମ୍ଝୁ ରହିଁଲା । ବନ୍ଧୁ ଧାଁ ଦଉଡ଼ କରି ଗାଁରୁ ଜାଣିବା ଶୁଣିବା ଲୋକଙ୍କୁ ଏକାଠି କଲା । ତଥାପି ମୁନ୍ ଜନ୍ମ କରି ନ ପାରି ମରିଗଲା । ବାବୁଟା କୁଆଡ଼େ 'ହୋ' କିନା କାନ୍ଦ ପକାଇଲା । ବାହୁନି ବାହୁନି ବୋବାଳି ଛାଡ଼ୁଥିବ ବାଲୁ । ସେ କଥା ସେ ମତେ କହିବାକୁ ଲାଜେଇଲା । କହିଲା ନାଇଁ, ଆଉ କହିଲା ନାଇଁ କେମିତି କୁନ୍ ଏକା ଲୟରେ ମୁନ୍‌ଟାକୁ ଅନେଇ ରହିଥିବ । ଆସ୍ତେ ଆସ୍ତେ କେମିତି ଝୁରି ଝୁରି କଣ୍ଟା ହୋଇ ଯାଇଥିବ । ସେ ସିନା କହିଲା ନାହିଁ, ମୁଁ କିନ୍ତୁ ଜାଣେ ।

"ତା'ପରେ ଯାହା ହେଲା ସେଇଟା ନିହାତି ହବା କଥା । କୁନ୍ ସବୁବେଳେ ହେଜା ବୁଢ଼େଇ ବସି ରହିଲା । ଆଉ ସଚେତନ ରହି ପାରିଲା ନାହିଁ । ତାକୁ ଦିନେ କୁକୁର ଝାମ୍ପି ନେଲା । ବାବୁ ତିନଦିନ ଉପାସ ରହିଲା । ବାଲୁ ସେ ଘରୁ କାମ ଛାଡ଼ି ଚାଲି ଆସିଲା । ବାବୁ ମଧ୍ୟ ବଦଳି ହୋଇ ସେଇଠୁ ବାହାରି ଗଲା—"

ଏମିତି ହଠାତ୍ କଥାଟାକୁ ହାଣିଲା ପରି ସାରିଦେଲାବେଳେ ମୁଁ ଅନେଇ ଥାଏ ନେତ୍ର ସିଂ ମୁହଁକୁ । ସେ ମୋଟ ଉପରେ ଦିଶୁଥାଏ ସତେ ବା ତା ଭିତରଟା ଗୋଳମାଳିଆ ଧରି ଯାଉଚି । ଗୋଟାଏ ବଜ୍‌ବଜିଆ ଚିତ୍ର ଦେଖିଲେ ଆମ ମୁହଁରେ ଯେପରି କ'ଣ କେମିତି ଗୋଟାଏ ଆଭାସ ଆସି ପୁଣି ଆସି ପାରେ ନାହିଁ ! ଗୁଡ଼ାଏ ଚିହ୍ନା ଚିହ୍ନା ରଙ୍ଗ, ଖୁବ୍ ଆପଣାର; ଖୁବ୍ ପାଖ ପଡ଼ଶାର ରଙ୍ଗ ନେଇ ଯେମିତି ଚିତ୍ରଟି ପର୍ଦା ଦେହରୁ ବୁକୁ ଆଡ଼କୁ ଚହଁରି ଆସେ । ତା'ର ପ୍ରତିଟି ରେଖା ଚିହ୍ନା, ପ୍ରତିଟି ମୋର ପରିଚିତ; କିନ୍ତୁ ସବୁ ମିଶିଗଲେ ସତେ ବା ଗୋଟାଏ ତାଗ୍—ଗ୍ରୀଷ୍ମର ଝଙ୍କାଳିଆ ଜଟିଆ ବରଗଛ ଯେଉଁଥିରେ ବାରି ହୁଏନାହିଁ ଚୁଲ କିଏ, ଡାଳ କିଏ, ପତ୍ର ବା କିଏ ! ଦି'ଟି ଠେକୁଆ ଗାଙ୍କର ଠିଆ ଠିଆ କାନ, ନର୍ଦ୍ଦମ ଅରଣ୍ୟର ଅବୁଝା ବୁଢ଼ାଣୀ ପରି ଦି'ଟା ଲେଖା ଆଖି । ତା' ଦେହକୁ ଲେସିହୋଇ ଉପୁଟି ବାବୁର କାନ୍ଦୁରା ମୁହଁ । ମୁନ୍ ଭିତରେ ମୋତି ବେହେରାର କାରୁଣ୍ୟ, ବାବୁର ଛାତିରେ ତା'ର ଝାପ୍‌ସା ଚୁଇ ପରି ମାଇକିନିଆ ସାଙ୍ଗମାନଙ୍କ ଭିତରେ ନେତ୍ର ସିଂର ତାରୁଣ୍ୟ !···ସବା ପଛରେ ବାଲୁ'ର ଗୋଟାଏ ଉଷୁମ-ମଖା, ତେନ୍ତୁଳି ଗଛର ଚୁଇପରି ଧୂଆଁ ଳିଆ ପରଳ । ସବୁ ଚିହ୍ନା—କିନ୍ତୁ ଏକାଠି ଦେଖିଲେ ଯା ଉପରେ ସେ, ତା ଉପରେ ସେ—ଏମିତି ମିଶା ଗୋଳିଆ ହୋଇ ଗୋଟାଏ ବଜ୍‌ବଜିଆ ଛବି । ଏ ଗହଳିଆ ଲଇ ଲଟା ଭିତରୁ ଦି'ହଳ ଆଖି

କନ୍ତୁ ତଳ ତଳ ଗୁଞ୍ଜିଫଳ ପରି ବାରି ହେଉଛନ୍ତି । କୁନ୍ ଆଉ ମୁନ୍—ନେଭ ସିଂର ନାତି ଆଉ ନାତୁଣୀ । ମା' ଝିଅ ଶଶା ଛୁଆ ଯୋଡ଼ିକ !···"

ମୁଁ ଚେଇଁ ଗୃହଁଦେଲା ବେଳକୁ ନେଭ ସିଂ ଖଣ୍ଡେ ଦୂରରେ ଗୃଲି ଯାଉଥାଏ । ତା'ମୁଣ୍ଡ ଖୁବ୍ ନୁଆଣିଆ, ପିଠିର କୁଜ ଉପରେ ଆମ୍ବ ଛେଚଲା ପରି ଚକଡ଼ାଏ ଚର୍ବି ।

ନେଭ ସିଂ ଆଉ ବୋଧେ ଶିକାର କରି ପାରିବନି । ତାକୁ ବଅସ ଅନେକ ।

———

## ଶ୍ରୀମତୀ ନନ୍ଦିନୀ ଶତପଥୀ

# ନବଦିଗନ୍ତ

"ବୋଉ, ବୋଉ, ବୋଉଲୋ !"

ଡାକ ଶୁଣି ମଣିକାଞ୍ଚନ ହାଣ୍ଡିଶାଳ ଭିତରୁ ଲୁଗାକାନିରେ ହାତ ପୋଛୁ ପୋଛୁ ବାହାରି ଆସିଲେ । ଦୁଆର ମୁହଁରେ ଠିଆହୋଇ ପଚାରିଲେ, "କଣ କରେ ଶ୍ରୀକାନ୍ତ, କାହିଁକି ଡାକୁଚୁ ?"

ଶ୍ରୀକାନ୍ତ ଆଉ ମଣିକାଞ୍ଚନଙ୍କ ମଝିରେ ଅଗଣା । ଦ୍ୱିପ୍ରହର ଖରା ସେଠି ବଗୁଡ଼ି ହୋଇ ପଡ଼ୁଛି । ଅଗଣାରେ ଦଉଡ଼ି ଟଣା ହୋଇ ଲୁଗା ଶୁଖୁଛି । ଚୂଲି ଧୁଁଆସରୁ ବାହାରି ଆସି ମଣିକାଞ୍ଚନଙ୍କ ଆଖି ଝାପ୍‌ସା ହୋଇଯାଇଛି—କିଛି ଦେଖାଯାଉନି ।

ଶ୍ରୀକାନ୍ତ ଅଗଣା ପାରହୋଇ ବୋଉ ପାଖକୁ ଆସୁଛି । ତାର ଚାଲିବାର ଭଙ୍ଗୀ ଦୌଡ଼ିଲା ପରି । ଏତେ ବଡ଼ଟିଏ ହେଲାଣି, ତଥାପି ତାର ସେ ପିଲାଳିଆ ଢଙ୍ଗ ଯାଇନାହିଁ । କଣଟିଏ ଆଣିଲେ କି ପାଇଲେ ପିଲାଦିନେ ସେ ଯେମିତି ଚିତ୍କାର କରି ବୋଉକୁ ଡାକ ପକାଉଥିଲା—"ବୋଉଲୋ

ଦେଖିଲୁ କଣ ଆଣିଛୁ ? ଆଜ ବି ସେମିତି ସେ ପାଟିକରି ଉଠେ । ସତେଇଶ ବର୍ଷର ଯୁବକ ଶ୍ରୀକାନ୍ତ ଆଉ ସାତ ବର୍ଷର ବାଳକ ଶ୍ରୀକାନ୍ତ ଭିତରେ କୌଣସି ପରିବର୍ତ୍ତନ ଯେପରି ଦେଖି ପାରନ୍ତି ନାହିଁ ଜନନୀ ମଣିକାଞ୍ଚନ ।

"ବୋଉ, ଦେଖ୍ ଏଇଟା କଣ ?" ଲଫାପା ଭିତରୁ କାଗଜ ଖଣ୍ଡେ ବୋଉ ହାତକୁ ବଢ଼େଇ ଦେଲା ଶ୍ରୀକାନ୍ତ ।

ମୁହୂର୍ତ୍ତକ ପାଇଁ ଏକ ଅଜଣା ଆଶଙ୍କାରେ କମ୍ପି ଉଠିଲା ମଣି-କାଞ୍ଚନଙ୍କର ଦେହ । ସେ ହାତ ବଢ଼େଇଦେଲେ; କିନ୍ତୁ ଚିଠିଟା ପଢ଼ିଲେ ନାହିଁ । ପୁଅର ମୁହଁକୁ ସେ ଏକ ଦୃଷ୍ଟିରେ ଚାହିଁ ରହିଛନ୍ତି, ପଲକ ପଡ଼ୁ-ନାହିଁ ଆଖିରେ ।

ହଲେଇ ଦେଲା ବୋଉକୁ ଶ୍ରୀକାନ୍ତ । "କଣ ଏମିତି ବୋକାଙ୍କ ପରି ଚାହିଁଛୁ ? ବସନ୍ତର ଚିଠି ଆସିଛି—ସେ ଫିରୋଜପୁରରେ ଅଛି ।"

ମଣିକାଞ୍ଚନ ଯେପରି କିଛି ବୁଝି ପାରୁ ନାହାନ୍ତି । ଫିରୋଜପୁରରୁ ବସନ୍ତର ଖବର ଆସିଛି—ସେ ଖବର ଆଉ କଣ ହୋଇପାରେ ? କିନ୍ତୁ ଏ କଣ କହୁଛି ଶ୍ରୀକାନ୍ତ ?

"ବସନ୍ତ ଅଛି ?" ଏକ ଅବିଶ୍ୱାସ ମିଶା ସ୍ୱରରେ ଯେପରି ନିଜକୁ ନିଜେ ପଚାରୁଛନ୍ତି ମଣି ।

ଶ୍ରୀକାନ୍ତ ବୋଉର କଥାରେ ବିରକ୍ତ ହୋଇପଡ଼ୁଛି । ଚିଠିଟା ଏକପ୍ରକାର ତାଙ୍କ ହାତରେ ଜବରଦସ୍ତି ଗୁଞ୍ଜି ଦେଇ କହୁଛି—"ତୁ ଏମିତି କଣ କହୁଛୁ, ବୋଉ ? ବସନ୍ତ ନିଜେ ଚିଠି ଲେଖିଛି ତୋ ପାଖକୁ । ନେ, ପଢ଼ି ଦେଖ ।"

ଲୁଗା କାନରେ ଜାଲୁଜାଲୁଆ ଆଖି ଦଣ୍ଟା ପୋଛୁଦେଲେ ମଣିକାଞ୍ଚନ । ଜୀବନ ସାରା ତ ସେ ଏମିତ ଖାଲ ଆଖି ପୋଛୁଛନ୍ତି ଥରକୁ ଥର, କନ୍ତୁ ଦୁଆରବନ୍ଧକୁ ଧର ଦମ୍ଭ ହୋଇ ଠିଆ ହୋଇଛନ୍ତି—ଲୁହର ବନ୍ୟାରେ ଭସିଯାଇନାହାନ୍ତି କେବେ ।

"ମୋ ପାଖରେ ଚଷମା ନାହିଁ—ତୁ ପଢ଼ି ଦେ ଚଠିଟା ।" ମଣି-କାଞ୍ଚନଙ୍କ ସ୍ୱର ବଦଳିଯାଇଛି ।

"ଆଚ୍ଛା ଶୁଣ ।" ଶ୍ରୀକାନ୍ତ ଚଠି ପଢ଼ିବାକୁ ଆରମ୍ଭ କଲ—

"ବୋଉଲୋ, ଯୁଦ୍ଧକ୍ଷେତ୍ରରୁ ତୋ ପାଖକୁ ଏ ଚଠି ଲେଖୁଛି । ପିଲାଦିନଯାକ ତୁ ମତେ ବାପାଙ୍କ କଥା ଶୁଣେଇଚୁ । ବାପାଙ୍କର ଆଦର୍ଶରେ ଜୀବନକୁ ଆମେ ଗଢ଼ୁ—ଏଇଆ ଖାଲ ବାପାଙ୍କର ଇଚ୍ଛା ନ ଥିଲା, ତୋର ବ ଇଚ୍ଛା ବୋଲ ମୋ ମନରେ ଧାରଣା ହୋଇଥିଲା । ତୁ ତ ଜୀବନର ଆରମ୍ଭରୁ ଯୁଦ୍ଧ କରୁଛୁ—ଅଭାବ ଅନଟନ ସାଙ୍ଗରେ, ଦୁଃଖ ସାଙ୍ଗରେ । ପୁଣି ଆମକୁ ମଣିଷ କର ଠିଆ କରବାପାଇଁ ବ ତୁ କମ୍ ସଂଗ୍ରାମ କରନାହୁଁ । ସେଥିପାଇଁ ଆଜର ଏ ଯୁଦ୍ଧକୁ ମୋତେ ପଠେଇ ଦେଇ ବ ତୁ ଯେ ଡ଼ରଯାଇ ନ ଥିବୁ ସେ କଥା ମୁଁ ଏଠି ରହି ମଧ୍ୟ ଅନୁଭବ କରୁଛି ।

"ସମ୍ମୁଖ ରଣକ୍ଷେତ୍ର ଏଇ । ଗୁଳିଗୁଳାର ଶବ୍ଦରେ କାନ ଫାଟି ଯାଉଛି । ଚଠି ଲେଖିବାରେ ବେଳ ଇଏ ନୁହେଁ । ଆଉ କେତେ ମିନଟ୍ ପରେ ମୋର ଅଧିନାୟକତ୍ୱରେ ଗୋଟିଏ ସୈନ୍ୟଦଳ ଆଗକୁ ଆଗକୁ ମାଡ଼ି ଚାଲିବେ । ତା ପରେ ଆଉ ଚଠି ଲେଖିବାକୁ ସମୟ ନଥିବ, ଅବସ୍ଥା ନ ଥିବ, ସେଥିପାଇଁ କହି ଦେଇ ଯାଉଛି—ତୋର ପୁଅ ଆଉ ତାର ସାଥିମାନେ ଅସୀମ ବୀରତ୍ୱ ସହକାରେ ଶତ୍ରୁ ସୈନ୍ୟ ସଙ୍ଗରେ ଲଢ଼ୁଛନ୍ତି । ତାଙ୍କର ବୀରତ୍ୱ, ତ୍ୟାଗ ଆଉ ଦେଶ ପ୍ରେମ ସାଙ୍ଗରେ ବଦେଶର ଅନ୍ତ

ଆଧୁନିକ ଅସ୍ତ୍ରଶସ୍ତ୍ର ତୁଚ୍ଛ ହୋଇ ଯାଇଛି । ଗୋଟିଏ ଗୋଟିଏ ଭାରତୀୟ ସୈନ୍ୟ ସହିତ କୋଡ଼ିଏଟି ଶତ୍ରୁ ସୈନ୍ୟ ମଧ୍ୟ ସମକକ୍ଷ ହୋଇ ପାରୁନାହାନ୍ତି । ବାପା ଯେଉଁ ସ୍ୱାଧୀନତା ଆଣିବାକୁ ପ୍ରାଣ ଦେଲେ, ସେଇ ସ୍ୱାଧୀନତାକୁ ରକ୍ଷାକରିବାକୁ ଯାଇ ମୁଁ ଯଦି ପ୍ରାଣ ଦିଏ, ତୁ କାନ୍ଦିବୁ ନାହିଁ । ମୁଁ କେତେ ଗର୍ବ ଅନୁଭବ କରୁଛି, ତୁ ଜାଣୁ ?

"ମା'ଙ୍କର ଯେଉଁ ଆଶୀର୍ବାଦ ଫୁଲ ତୁ ପଠେଇଥିଲୁ, ତାହା ମୋ ପାଖରେ ଅଛି । ଦୁର୍ଗାଙ୍କର ସିଂହ ଆମକୁ ରକ୍ଷା କରୁଛି । ନିର୍ଭୟରେ ଆମେ ଲଢ଼ି ଯାଉଛୁ । ଆମର ବିଜୟ ସୁନିଶ୍ଚିତ । ତୋ ସହିତ ମୋ ଦେଶଜନନୀଙ୍କୁ ପ୍ରଣାମ ଜଣାଉଛି—ଜୟହିନ୍ଦ୍ ।"

ଶ୍ରୀକାନ୍ତର କଣ୍ଠ ବାଷ୍ପରୁଦ୍ଧ । ଝରି ଆସୁଥିବା ଆବେଗାଶ୍ରୁକୁ ଲୁଚେଇବା ପାଇଁ ସେ ବୋଉଆଡ଼ୁ ମୁହଁ ଫେରାଇ ନେଇ ଚାଲିଯାଉଛି । ନୀରବରେ ଧାର ଧାର ହୋଇ ଲୁହ ଝରି ଆସୁଛି ମଣିକାଞ୍ଚନଙ୍କ ଆଖିରୁ । ଅତୀତ ଉପରୁ ଗୋଟି ଗୋଟି ହୋଇ ପରଦା ଉଠି ଯାଉଛି ।

ଏମିତି ଗୋଟିଏ ଚିଠି ସେ ପାଇଥିଲେ କାହିଁ କେତେ ବର୍ଷ ତଳେ ୧୯୪୨ ମସିହାରେ ସ୍ୱାମୀଙ୍କଠାରୁ । ଇଂରେଜ ସରକାରଙ୍କ ଜେଲରେ ବନ୍ଦୀ ସେ ସେତେବେଳକୁ । କେତେ ବା ବୟସ ସେତେବେଳେ ମଣିକାଞ୍ଚନଙ୍କୁ ? ଶ୍ରୀକାନ୍ତକୁ ମାସ ତିନିବର୍ଷ ହେବ । ଆଉ ବସନ୍ତ ? ଧରାର ଆଲୋକ ଦେଖିବା ପାଇଁ ସେତେବେଳେ ସେ ଅପେକ୍ଷା କରିଛି ମଣିକାଞ୍ଚନଙ୍କ ଗର୍ଭ ଭିତରେ ।

ଚୁଲି ଉପରେ ଭାତ ଫୁଟୁଛି । ମନରେ ଫୁଟୁଛି ଅସଂଖ୍ୟ ସାନ ବଡ଼ କଥାର ସ୍ମୃତି । ସେଇଠି ଦୁଆରବନ୍ଧକୁ ଆଉଜି ନିଜର ଅଜାଣତରେ କେତେବେଳେ ବସିପଡ଼ିଛନ୍ତି ମଣିକାଞ୍ଚନ ।

ନୂଆବୋହୂ ହୋଇ ଘରେ ପାଦ ଦେଉ ଦେଉ ଏ ଘରର ସବୁ ଦାୟିତ୍ୱ ତାଙ୍କୁ ନିଜ କାନ୍ଧ ଉପରକୁ ଟେକି ନେବାକୁ ପଡ଼ିଥିଲା । ବିଧବା ବୃଦ୍ଧା ଶାଶୂ ମୁଣ୍ଡ ଆଉଁଷି ଦେଇ କହିଥିଲେ—"ତୁ ମୋର ଲକ୍ଷ୍ମୀ ! ସଦାଶିବ ପାଗଳାଟାଏ । ଖାଲି ଦେଶ ଦେଶ ହୋଇ ବୁଲିଲା । ଘରକଥା କିଛି ବୁଝିଲା ନାହିଁ । ଜେଲ୍ ଯାଉଛି, ମାଡ଼ ଖାଉଛି, ଦଳ ଦଳ କରି ଲୋକଙ୍କୁ ଘରକୁ ଆଣି ସଭା କରୁଛି । ଆଜିଯାଏଁ ତାର ସବୁ ଅଳି ଅର୍ଦ୍ଦଳି ମୁଁ ସମ୍ଭାଳିଲି । ଏଥର ତୁ ସମ୍ଭାଳିବୁ । ତା'ଉପରେ ରାଗିବୁ ନାହିଁ—ଅଭିମାନ କରିବୁ ନାହିଁ, ମୋ ମା !"

ସଦାବ୍ରତ ପାଖରେ ଠିଆହୋଇ ହସୁଥିଲେ । ଲମ୍ବା ଚଉଡ଼ା ଗୋରାତକ୍‌ତକ୍ ସୁନ୍ଦର ମୁହଁରେ ସେ ହସଟା ସେତେବେଳେ ଚଉଦ ପନ୍ଦର ବର୍ଷର କିଶୋରୀ ମଣିକାଞ୍ଚନଙ୍କୁ ଭାରି ଆଶ୍ଚର୍ଯ୍ୟ ଲାଗିଥିଲା । ବିବାହ ପୂର୍ବରୁ ସେ ଜାଣିଥିଲେ ସ୍ୱାମୀ ତାଙ୍କର ଦେଶ କାମ କରନ୍ତି; କିନ୍ତୁ କଣ ସେ ଦେଶ କାମ, କେମିତି ତାକୁ କରିବାକୁ ହୁଏ, ସେ ବିଷୟରେ କିଛି ଧାରଣା ନ ଥିଲା ତାଙ୍କ ମନରେ ।

ପ୍ରଥମେ ଯେତେବେଳେ ସ୍ୱାମୀଙ୍କ ସହିତ ମଣିର ଦେଖା ହେଲା, ସେତେବେଳେ ସେ ମଧ୍ୟ ଶାଶୁଙ୍କ କଥା ପୁନରାବୃତ୍ତି କରିଥିଲେ—

"ବୋଉ କଥା ଶୁଣିଲ ତ ମଣି ? ଗ୍ରହଣ କରିପାରିବ ମୋ ରାଗକୁ ?" ପୂର୍ବର ସେଇ ହସ ସେମିତି ତାଙ୍କ ମୁହଁରେ ଲାଗିରହିଲା ।

ମଣିକାଞ୍ଚନଙ୍କୁ ସବୁ ଯେମିତି ଅଦ୍ଭୁତ ମନେହେଉଥିଲା । ସେ ଅବାକ୍ ହୋଇଯାଇଥିଲେ । ବିବାହ, ସ୍ୱାମୀ, ଶ୍ୱଶୁରଗୃହ ବିଷୟରେ ତାଙ୍କ ମନ ଭିତରେ ଆବାଲ୍ୟରୁ ଯେଉଁ ସବୁ ଧାରଣା ସୃଷ୍ଟି କରାହୋଇଥିଲା,

ସବୁ ଯେମିତି ମୁହୂର୍ତ୍ତିକ ଭିତରେ ଓଲଟ ପାଲଟ ହୋଇଯାଉଥିଲା । ବଲ ବଲ କରି ସଦାବ୍ରତଙ୍କ ମୁହଁକୁ ଗୃହିଁ ନିଜର ଅଜାଣତରେ ସେ ତାଙ୍କ ପ୍ରଶ୍ନର ଜବାବ୍ ଦେଇପକାଇଥିଲେ, "ହଁ ଗୃଲି ପାରିବ ।"

ସେଦ୍ଦିନ ଦିନଠାରୁ ସେ ଗୃଲିଛନ୍ତି । ମୁହୂର୍ତ୍ତିକ ପାଇଁ କ୍ଷୋଭ ପ୍ରକାଶ କରି ନାହାନ୍ତି, ଅଭିମାନ କରି ନାହାନ୍ତି । ଦଳ ଦଳ ଲୋକଙ୍କୁ ନେଇ ସଦାବ୍ରତ ଘରକୁ ଆସିଛନ୍ତି—ରାନ୍ଧି ବାଢ଼ି ସେମାନଙ୍କୁ ଖୁଆଇଛନ୍ତି ସେ । ସମୟ ଅସମୟର ବିଗୃର ହୋଇନି । ଘର ଖାନ୍ତଲାସ ହୋଇଛି ! ଜିନିଷପତ୍ର ସବୁ ଜବତ୍ ହୋଇଯାଇଛି । ସଦାବ୍ରତ ବନ୍ଦୀ ହୋଇଛନ୍ତି । ଜମିବାଡ଼ି ବନ୍ଧା ପଡ଼ିଛି । ଦୁଇବେଳା ଖାଇବାକୁ ଜୁଟି ନାହିଁ, ତଥାପି ମଣିକାଞ୍ଚନ ଗୃଲିଛନ୍ତି । ସଦାବ୍ରତ ଜେଲରୁ ଫେରି ମଣି ମୁହଁରେ ଦେଖିଛନ୍ତି ହସ—ସତେ ଯେପରି ନିଜକୁ ଦର୍ପଣରେ ଦେଖୁଛନ୍ତି । ସଦାବ୍ରତ ବି ଅବାକ୍ ହୋଇଯାଇଛନ୍ତି ।

"ତୁମେ ହସୁଛ ମଣି ?"

ସେମିତି ହସି ହସି ମଣି ଜବାବ ଦେଇଛନ୍ତି—"ତୁମଠାରୁ ଶିଖିଛି ପରା !"

କେଡ଼େ ଶୀଘ୍ର ଶୀଘ୍ର ସେଇ ଜୀବନର ବି ଅବସାନ ହୋଇଗଲା । ପୋଲିସ୍ ମାଡ଼ରେ ଆହତ ହୋଇ ସଦାବ୍ରତ ସେଥର ଯେତେବେଳେ ଘରକୁ ଫେରିଲେ, ସେତେବେଳେ ତାଙ୍କୁ ଆଉ ଚିହ୍ନିବାର ଉପାୟ ନଥିଲା । ଏଡ଼େ ସୁନ୍ଦର ମଣିଷଟା ଶୁଖି କଳାକାଠ ହୋଇଯାଇଥିଲା; ସେମିତି ସଦା ପ୍ରଫୁଲ୍ଲ ରହି ମଣି ତାଙ୍କର ସେବା ଶୁଶ୍ରୂଷା କରିଥିଲେ; କିନ୍ତୁ ସମ୍ପୂର୍ଣ୍ଣ ଆରୋଗ୍ୟ ହେବା ପୂର୍ବରୁ ପୁଣି ଯେତେବେଳେ ତାଙ୍କୁ ବନ୍ଦୀ କରି ନିଆଗଲା, ସେତେବେଳେ ତିନିବର୍ଷର ଶିଶୁ ଶ୍ରୀକାନ୍ତ ଏବଂ ଆଗତ ପ୍ରାୟ ସନ୍ତାନ ଉଦ୍ଦେଶ୍ୟରେ ସଦାବ୍ରତ କହିଯାଇଥିଲେ ତାଙ୍କର ଶେଷ କଥା—"ପିଲାମାନଙ୍କୁ ଦେଶ

କାମରେ ଉଦ୍‌ବୁଦ୍ଧ କରିବ । ମୋ କଥା ସେମାନଙ୍କୁ ମନେ ପକାଇ ଦେଉଥିବ ।” ସଦାବ୍ରତ ବୋଧହୁଏ ଅନୁଭବ କରିଥିଲେ, ସେ ଆଉ ଜେଲ୍‌ଖାନାରୁ ଫେରି ଆସିବେ ନାହିଁ ।

"ବୋଉ !" ଚମକିପଡ଼ିଲେ ମଣି । କେତେ ବର୍ଷ ତଳୁ ହଠାତ୍ ଫେରି ଆସି ସେ ଯେମିତି ବିମୂଢ଼ ହୋଇଗଲେ କିଛି କ୍ଷଣ ପାଇଁ ।

"ବୋଉ, କାଲି ରାତିରେ ଶାସ୍ତ୍ରୀଜୀ ଦେଶବାସୀଙ୍କ ଉଦ୍ଦେଶ୍ୟରେ ରେଡ଼ିଓରେ କଣ କହିଛନ୍ତି ଜାଣୁ ?" ଶ୍ରୀକାନ୍ତ ଖବର କାଗଜଟା ବୋଉ ଆଗରେ ମେଲାଇ ଧରିଲା । "ଯେଉଁମାନେ ସମ୍ମୁଖ ରଣାଙ୍ଗନରେ ଲଢ଼ୁଛନ୍ତି ସେମାନେ ଦେଶର ଯେତିକି ଗୌରବ, ଯେଉଁ କୃଷୀମାନେ ଦେଶକୁ ଖାଦ୍ୟ ଯୋଗାଇବାପାଇଁ ମୁଣ୍ଡ ଝାଳ ତୁଣ୍ଡରେ ମାରି କାମ କରି ଯାଉଛନ୍ତି, ସେମାନେ ମଧ୍ୟ ଦେଶର ସେତିକି ଗୌରବ ।"

ମଣିକାଞ୍ଚନ ଶ୍ରୀକାନ୍ତର ମୁଣ୍ଡରେ ହାତ ବୁଲାଇ ଦେଉଥିଲେ । ପୁଅର ମନୋଭାବ ବୁଝିବା ତାଙ୍କ ପକ୍ଷରେ କଷ୍ଟକର ନ ଥିଲା । ବସନ୍ତ ଭଳି ସେ ବି ଦେଶ ପାଇଁ ଲଢ଼ୁଛି, ବାପାଙ୍କର ଶେଷ ଇଚ୍ଛାକୁ ପୂରଣ କରିଛି, ଏଇ କଥା ସେ ବୋଉଙ୍କୁ ଜଣାଇବାକୁ ଚାହୁଁ ଥିଲା । କୃଷି ବିଦ୍ୟାରେ ଡିଗ୍ରୀ ନେଇ ସେ ଗାଁକୁ ଆସି କ୍ଷେତରେ କାମ କରୁଥିଲା, ନିଜର ବୁଦ୍ଧି ବିଦ୍ୟା ଦେଇ ନିଜର ଆଉ ଗାଁର ଉତ୍ପାଦନ ବଢ଼ାଇବାକୁ ଚେଷ୍ଟା କରୁଥିଲା । ତା ମନରେ ଆଜି ପ୍ରଶ୍ନ ଉଠିଛି—ସେ କ'ଣ ଦେଶ ପ୍ରତି ତାର କର୍ତ୍ତବ୍ୟରେ ହେଳା କରିଛି କି ?

ମଣିକାଞ୍ଚନ ହସୁଛନ୍ତି । ପୁଅ ମୁଣ୍ଡରେ ହାତ ରଖି କହୁଛନ୍ତି— "ତୋ ପ୍ରଶ୍ନର ଉତ୍ତର ତେବେ ଶାସ୍ତ୍ରୀଜୀଙ୍କ ବକ୍ତୃତାରୁ ତତେ ମିଳିଲା । ଏପର୍ଯ୍ୟନ୍ତ କଣ ସନ୍ଦେହରେ ଥିଲୁ ?"

ତାର ବୋଉ ତେବେ ତା ମନକଥାକୁ ଠିକ୍ ଧରି ନେଇଛି । ସତେଇଶ ବର୍ଷର ଯୁବକ ହଠାତ୍ ଆତ୍ମ-ସଚେତନ ହୋଇପଡ଼ିଲା ।

ସମବାୟ ଫାର୍ମର ସଭ୍ୟମାନେ ଘର ଭିତରକୁ ପଶି ଆସୁ ଆସୁ କହୁଛନ୍ତି—“ଶ୍ରୀକାନ୍ତ ଭାଇ, ଶାସ୍ତ୍ରୀଜୀଙ୍କ ନୂଆ ସ୍ଲୋଗାନ୍ ଶୁଣିଲଣି—”

“ଜୟ ଜବାନ୍, ଜୟ କିସାନ୍ !”

ଗାଆଁର ପରିତୃପ୍ତିର ଏକ ହସ ହସି ମଣିକାଞ୍ଚନ ବୋଷେଇ ଘର ଭିତରକୁ ଚାଲିଯାଉଛନ୍ତି । ଏମାନଙ୍କ ପାଇଁ ରାନ୍ଧିବାକୁ ହେବ— ସଦାବ୍ରତଙ୍କ ଅମଳରୁ ଯାହା ସେ କରିଆସିଛନ୍ତି ।

———

ଡକ୍‌ଟର କୃଷ୍ଣ ପ୍ରସାଦ ମିଶ୍ର

# ଅରସିକେଷୁ

( ୧ )

ଷ୍ଟେସନ୍‌ରୁ ଶଗଡ଼ ଚଳିବାକ୍ଷଣି ଶେଠ୍ ମଙ୍ଗଳ ଦାସ ଖ୍ୟାପଣ-ଭାବେ ନିଜର ଧର୍ମପତ୍ନୀ ସୌଭାଗ୍ୟକୁମାରୀଙ୍କ ଉପରେ ରାଗିଗଲେ । ଯେପରି ତ କଟକରୁ ବାହାରିବାବେଳୁଁ ସେ ସୌଭାଗ୍ୟଙ୍କ ଉପରେ ଚିଡ଼୍ ଚିଡ଼୍-ମାର୍ ମାର୍ ହେଉଥାନ୍ତି । ଶଗଡ଼ ଭିତରେ ଆଗରୁ ବସିବା ଅଭ୍ୟାସ ନ ଥିଲା । ଶ୍ରେଣିଆ ଚାରିଟି ଭିତରେ ଗୋଟିଏ ଶଗଡ଼ରେ ତିନୋଟି ପିଲା, ସୌଭାଗ୍ୟ ଓ ସେ ଜାକଜୁକ ହୋଇ ବସିଥାନ୍ତି । ତହିଁକି ସୌଭାଗ୍ୟ ଓ ଶେଠ୍‌ଙ୍କ ଖୁବ୍ ସ୍ୱାସ୍ଥ୍ୟ-ସମ୍ପତ୍ତିର ଅଧିକାରୀ । ଖରାଦିନ । ପଠାଣ ଶଗଡ଼ ରାସ୍ତାରେ ଧଡ଼୍ ଧଡ଼୍ ହୋଇ ଧୂଳି ଉଡ଼ାଇ ଚଳିବାକ୍ଷଣି ଗୋଟିଏ ପିଲାର ମୁଣ୍ଡ ଚାଟି-ବାଉଁଶରେ ଠୋ କିନା ପିଟି ହୋଇଯିବାରୁ ସେ ଭେଁ କରି ସ୍ୱର ଲମ୍ବାଇଦେଲା । ଶେଠ୍‌ଙ୍କର ସହିଷ୍ଣୁତାର ସୀମା ସେତିକିରେ ଶେଷ ହୋଇଗଲା । ସେ ପ୍ରଚଣ୍ଡ ଗଳାରେ ପାଟି କଲେ—

ମର ଝଲେ ! ମାର୍ ଶାଳେକୋ ! ଆଚ୍ଛା ହୁଆ !

ପିଲାର ମୁଣ୍ଡ ଆଉଁଷି ଦେଉ ଦେଉ ଶେଠ୍ କହି ଚାଲିଥାନ୍ତି—ଦେଖୁଛ ତ ? ସ୍ତ୍ରୀମାନଙ୍କର ବୁଦ୍ଧି କପରି ପ୍ରଳୟଙ୍କରୀ ! କ'ଣ ଦରକାର ଥିଲା ଜୁନ୍ ମାସର ଏ ଖରାରେ ଏ ମଫସଲକୁ ଆସିବା ? କଟକରେ ତ ନିଶ୍ଚିନ୍ତରେ ଫ୍ୟାନ୍ ତଳେ ଏତେବେଳକୁ ଶୋଉଥାଆନ୍ତ, ଖାଲି ତ ଜଦ୍ ଜ୍ୟୋତିଷ-ପଣ୍ଡିତ ପାଖକୁ ଯିବା । ଭଗବତୀଙ୍କ ପାଖକୁ ଯିବା । ମାନା ପଣ୍ଡିତ ପାଖକୁ ଯିବା । ଜାତକ ଦେଖାଇବା । ସେଇ ଜିଦ୍ଦର ଫଳ ଏବେ ସମସ୍ତେ ଭୋଗ କରୁଛେ । ମୋର ମଧ୍ୟ କପରି ବୁଦ୍ଧି ଭ୍ରମ ହେଲା କେଜାଣି, ଯାହା ତୁମ କଥାରେ ମୁଁ ଚଣ୍ଡାଳ ରାଜି ହୋଇଗଲି ।

ସୌଭାଗ୍ୟ କ'ଣ କହିବେ ! ସତରେ ସେଇ ତ ଲଗାଇ ଲଗାଇ ସମସ୍ତଙ୍କୁ ଆଣିଛନ୍ତି । ହେଲେ ମାନା ପଣ୍ଡିତ ବଞ୍ଚି ଥାଉ ଥାଉ ଜ୍ୟୋତିଷ ବିଶ୍ୱାସ କରୁଥିବା କେଉଁ ଲୋକ ତା ପାଖକୁ ନ ଆସିବ ? ଲୋକେ ତ କହୁଛନ୍ତି ସେ ଫଳିତ ବିଦ୍ୟାରେ ସବର ସଠାଣି ସାଆନ୍ତଙ୍କଠୁ ବଳି । ଦିଲ୍ଲୀ ପଞ୍ଜାବରୁ ଲୋକେ ଟଙ୍କା ଖର୍ଚ୍ଚ କରି ଜାତକ ଦେଖାଇବାକୁ ମାନା ପଣ୍ଡିତ ପାଖକୁ ଆସୁଛନ୍ତି । କଟକରେ ଥାଇ, ମୋଟେ ଅଶୀମାଇଲ ଦୂରରେ ଥିବା ଗାଁକୁ ସେମାନେ ଆସି ପାରିବେ ନାହିଁ ! ଏହି ଚିନ୍ତା ସୌଭାଗ୍ୟକୁ ଦିନରାତି ବ୍ୟଥିତ କରିବାରୁ ସେ ସ୍ୱାମୀଙ୍କୁ ଲଗାଇ ଲଗାଇ ଏ ଦୂର ମଫସଲ ଗାଁକୁ ଆସିଛନ୍ତି । ହେଲେ ସେ ପଣ୍ଡିତ, ଠାକୁରାଣୀଙ୍କ ଆସ୍ଥାନ ଗୁଡ଼ି କୁଆଡେ ଯିବା ଆସିବା କରୁଥାଆନ୍ତେ ! ତା' ହେଲେ ତାଙ୍କୁ ଡକାଇ କଟକ ନେଇ ଯାଇ ଥାଆନ୍ତେ ।

ଶଗଡ଼ଟା ଧଡ଼ ଧଡ଼ ହୋଇ ଚାଲିଛି । ଦେହ, ହାତ, ମୁଣ୍ଡ, ଥୟ ହୋଇ ରହୁ ନାହିଁ, ସବୁ ଯେପରି ଅଲଗା ହୋଇଯିବେ, ସେପରି ଲାଗୁଛି । ପିଲାଗୁଡ଼ାକ, କାଳେ ମୁଣ୍ଡ ବାଉଁଶ-ତାଟିରେ ବାଜିଯିବ ବୋଲି : ହୁସିଆର ହୋଇ ବସିଛନ୍ତି । ଯଠାଣ ଶଗଡ଼ିଆ ବଳଦଗୁଡ଼ାକର ଲାଙ୍ଗୁଳକୁ ମୋଡ଼ି

ଦେଇ ଶଗଡ଼କୁ ମୁମୂର୍ଷୁ, କଙ୍କାଳସାର ରାସ୍ତା ଉପରେ ବେଳେ ବେଳେ ଦଉଡ଼ାଇ ଦେଲେ ପିଲାଗୁଡ଼ିକର ଚର୍ବିଳ ଗାଲରେ, ସୌଭାଗ୍ୟଙ୍କର ବିଶାଳବକ୍ଷରେ ତରଙ୍ଗ ସୃଷ୍ଟି ହେଉଛି । ଶେଠ୍ ରାସ୍ତାକୁ ଗୃହୁଁ ପଠାଣକୁ ଶଗଡ଼ ଧୀରେ ଧୀରେ ନେବାକୁ କହିବାକୁ ଗୃହିଁଲେ; କିନ୍ତୁ କେଜାଣି କାହିଁକି କିଛି କହିଲେ ନାହିଁ । ଦାନ୍ତ ଚିପି ସବୁ କଷ୍ଟକୁ ସେ ସହି ନେବାକୁ ଯେପରି ନିଜକୁ ପ୍ରସ୍ତୁତ କରି ସାରିଥିଲେ । ରାସ୍ତାରୁ ଗୋଡ଼ି ପଥରଗୁଡ଼ାକ ବାହାରି ଯାଇ ଏଣେ ତେଣେ ପଡ଼ିଥାଏ । ମଝିରେ ମଝିରେ ଖାଲ, ଶଗଡ଼ ଠିକଏ ତାହା ଗୁଡ଼ିଲେ ଖ୍ରଷଣଭାବେ ଧଡ଼୍ ଧଡ଼୍ ହେଉଥାଏ । ମଝିରେ ମଝିରେ ଲଗି କି କାର୍ ଗୃଲିଗଲେ ପାଞ୍ଚମିନିଟ୍ ପାଇଁ ଧୂଳିର ଆସ୍ତରଣ ଗୃରିଆଡ଼େ ଖେଳାଇ ହୋଇ ରହିଯାଉଥାଏ । ଶଗଡଭିତରେ ସମସ୍ତେ ନାକ, ପାଟିରେ ରୁମାଲ୍ ଦେଉଥାଆନ୍ତି । ରୁମାଲ୍‌କୁ ନାକରେ ଜାକି ଧରି ଶେଠ୍ ମନେ ମନେ ତୁଲସୀଦୋହା ମନେ ପକାଇ ଘୋଷି ହେଉଥାନ୍ତି—

ଢାନ୍ ମେ ଘମିମା, ଗାଡ୍‌ମେ ବାଢ଼ିମା
ପଲକ୍ ପଲକ୍ ଲହୁ ଗ୍ରେଷେ
ତବ୍‌ଭି ଆଦ୍‌ମୀ ମସ୍ତ ହୋ କର୍
ଘର୍ ଘର୍ ବାଢ଼ିମା ପୋଷେ ।

ସୌଭାଗ୍ୟ ପଠାଣକୁ ପଗ୍ଭରିଲେ—ବଡ଼ପାଟଣା ଆଉ କେତେ ବାଟ ଅଛି ?

ଆହୁରି ତିନମାଇଲ୍ ହେବ ।

ତିନ ମାଇଲ୍ !

ଶେଠ୍ ବେଦନାରେ ଗଁ ଗଁ ହୋଇ କହିଲେ । ପଠାଣ ନିଶ୍ଚିନ୍ତ ହୋଇ ଶଗଡ଼ ଆଗରେ ବସି ବଳଦ ଯୋଡ଼ାକୁ ଚି—ଚିକାର କରୁ କରୁ ପଚାରିଲା—ବାବୁ, ଆପଣ କଟକରୁ ଆସିଲେ ?

ହଁ । ସୌଭାଗ୍ୟ ଉତ୍ତର ଦେଲେ ।

ତିନମାଇଲ ଦୂରତା କଥା ଶୁଣି ସାରିବା ପରେ ଶେଠ୍ ନିଶ୍ଚିନ୍ତ ହୋଇ ଶଗଡ଼ରେ ସମୟଟକ କିପରି କଟାଇବେ ଭାବୁ ଥାଆନ୍ତି ।

ଆପଣଙ୍କର ଏଠି କେହି ରିସ୍ତେଦାର ଅଛନ୍ତି ?

ନା, ଆମେ ଜ୍ୟୋତିଷ ପଣ୍ଡିତ ପାଖକୁ ଆସିଛୁ ।

ଓହୋ ! ମାନା ପଣ୍ଡିତ !

ଭଲ ଜୋତିଷୀ ନା ?

ତା' ଡାକ ଶୁଣି ତ ଲୋକ ଦିଲ୍ଲୀ ଦୌଲତାବାଦରୁ ଦଉଡ଼ୁଛନ୍ତି, ତା ଭଲ କଥା ପଚାରୁଛ ? ଆଲ୍‌ହାପାକ୍ ତା ଜବାନ୍‌ରେ ଅଛନ୍ତି । ସେଇଥିପାଇଁ ପରା ସେ ଯାହା କହୁଛି ସତ ହେଉଛି । ପହୁଞ୍ଚାହୁଆ ଆଦମୀ !

ସେହିପରି ନାମ ଶୁଣି ଆମେ ଆସିଛୁ ।

ଗତ ସାଲେ ଜଣେ ତେଲଙ୍ଗା ଆସିଥିଲା ମୋର ଶଗଡ଼ରେ । କେହି ତା'ର ନ ଥିଲେ । ପଣ୍ଡିତ ତାକୁ କହିଥିଲା—ଭାଗ୍ୟବାନ୍ ଆଦମୀ ! ଚିନ୍ତା କର ନା ସ୍ୱର୍ଗର ପରୀ ତୋତେ ବିଭା ହେବ । ଯା ଫେରିଯା, ଫେରିଯା ମାନ୍ଦ୍ରାସକୁ ।

ସେୟା ହେଲା । ମାଡ୍ରାସକୁ ଫେରିବାର ଦିନେ ଦୁଇଦିନ ପରେ ପରେ ସମୁଦ୍ରକୂଳରେ ଜଣେ ପରି ଭଳି ଝିଅ ସହିତ ତା'ର ଦେଖା ହେଲା । ପହିଲି ମୁଲାକାତରେ ଦୁହିଁଙ୍କର ମୋହବତ୍ ହୋଇଗଲା । ସେ ଝିଅକୁ ବିଭାକରି ଏବେ ସେ କମ୍ପାନୀ ମାଲିକ ହୋଇ କୋଏମ୍ବାଟୁରରେ । ଯେଉଁ ଶାଢ଼ୀ ଆସୁନି ସବୁ, ସେଇ ଲୋକ କମ୍ପାନୀରୁ ସେଇ ସବୁ ଶାଢ଼ୀ ଆସେ ।

ସୌଭାଗ୍ୟ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ—ସବୁ ନିଜ ନିଜ ଭାଗ୍ୟର କଥା !

ଶେଠ୍ ବାଜେ କଥାରେ କାନ ନ ଦେଇ ସବୁ ଭାଗ୍ୟକଥା ତ ଆସୁଥିଲି କାହିଁ ? ତୁମକୁ କଟକରେ ସେ କଥା କୁହାଯାଇ ନ ଥିଲା ? ଡାଏରି ଖୋଲି କଟକରୁ ଆସିବାବେଳଠୁଁ ଏବ ସୁଦ୍ଧା ଖର୍ଚ୍ଚ ହିସାବ କରିବାକୁ ଚେଷ୍ଟା କଲେ; କିନ୍ତୁ ଶଗଡ଼ ଧଡ଼ଧଡ଼ରେ କି ଲେଖି ହୁଏ ? ଅକ୍ଷରଗୁଡ଼ାକ ବଡ଼ ଗ୍ରେଟ୍, ଏପଟ ସେପଟ ହେବାକୁ ଲାଗିଲେ । ସେ ବିରକ୍ତ ହୋଇ ଡାଏରି ବନ୍ଦ କରି ପକେଟ୍‌ରେ ଡ଼ାଏରୀକୁ ରଖି ସବୁ ଖର୍ଚ୍ଚ ମନେ ମନେ ହେଜିବାକୁ ଲାଗିଲେ । ଗୋଟିଏ ହେଲେ ପଇସା ସେ ନ ଛିପି, ହିସାବ ନ ରଖି ଖର୍ଚ୍ଚ କରନ୍ତି ନାହିଁ ।

ନଯ୍ୟାସଡ଼କରୁ ଷ୍ଟେସନ୍—ଦୁଇଟି ରିକ୍‌ସା, ସାତଅଣା କରି ଚଉଦ ଅଣା । (ଓଡ଼ିଆ ରିକସା ଦଶଅଣା କରି କହୁଥିଲେ । ରିକ୍‌ସା ଟାଣିବାକୁ ବଳ ତ ନାହିଁ, ସେଥିପାଇଁ ନାହିଁ ନ ଥିବା ଭଡ଼ା । ତଥାପି ତେଲଙ୍ଗା ରିକ୍‌ସାବାଲାଙ୍କ ସାଙ୍ଗରେ ବି ବହୁତ ଝଗଡ଼ା କରିବାକୁ ହୋଇଛି) । କୁଲୀ ବାବଦେ ତିନଅଣା କରି ମୋଟ ଛଅଅଣା ! ସେଥିପାଇଁ ବି ଝଗଡ଼ା । ଠିକ୍ ରେଟ୍ ଅନୁସାରେ ତ କାମ କରିବାକୁ ସମସ୍ତେ

ନାରଜ୍ । ରେଲ୍‌ରେ ସୋଡ଼ା ବାବଦେ ଟଙ୍କେ, ସବୁ ମିଶି—ହଁ, ଟିକଟ ଖର୍ଚ୍ଚ—ତିନଟା ଫୁଲ୍ ଯୋଡ଼େ ହାଫ୍‌କୁ ଦଶଟଙ୍କା ଆଠଅଣା—ସବୁ ମିଶି ହେଲା ବାରଟଙ୍କା ବାରଅଣା ।

ବାରଟଙ୍କା ବାରଅଣା ! —ଶେଠ୍ ମନରେ ପୁଣି ଦୋହରାଇଲେ —ବାରଟଙ୍କା ବାରଅଣା ! ସ୍ତ୍ରୀ ବୁଦ୍ଧିରେ ପଡ଼ି ଆହୁରି କେତେ ଟଙ୍କା ସତ୍ୟାନାଶ ହେବାକୁ ଅଛି କେଜାଣି । ଲୁଚ୍ଚାଟାକୁ ବାରଟଙ୍କା ବାରଅଣା ! ଯାହା ତ ଭାଗ୍ୟରେ ଥିବ ତା ହେବ । ଜାତକ ଦେଖାଇ ଫଳ କଣ ହେବ କେଜାଣି ! ମନ୍ତ୍ରୀବାଟା ବଦଳିଯିବ ? ଶେଠ୍ ମଙ୍ଗଳ ଦାସ ଭାରତର ପ୍ରଧାନମନ୍ତ୍ରୀ ହୋଇଯିବେ ? ନା ମୋଟାରେଟା ସୌଭାଗ୍ୟକୁମାରୀ ଅନାର-କଲିର ଖଣାଗାଗ୍ର ଭଳିଆ କେବେ ଦିଶିବେ ?

ଶେଠ୍ ହଠାତ୍ ପଠାଣ ଶଗଡ଼ିଆକୁ କଟମଟ କରି ଚାହିଁଲେ । କେତେ ଭଡ଼ା କହିବ କେଜାଣି । ପଠାଣଙ୍କୁ ବିଶ୍ୱାସ ଅଛି ? ଷ୍ଟେସନରୁ ମାଇଲକୁ କେତେ ଭଡ଼ା ହେବା ଉଚିତ ? ରିକ୍‌ସା ହେଲେ କଟକରେ ଆଠଅଣା ଦଶଣା ହୋଇଥାଆନ୍ତା । ଏଠି ଦଶଣା ହେଉ । ଗୋଟାଏ ଶଗଡ଼ମାନେ ଯୋଡ଼ାଏ ରିକ୍‌ସା, ଦଶଣାକରି ଟଙ୍କେ ଚାରଣା ନେବ । କେତେ ଆଉ ନବ ! ତଥାପି ଶେଠ୍ ଅଶାନ୍ତି ଅନୁଭବ କଲେ । ସୌଭାଗ୍ୟଙ୍କ ଉପରେ ତାଙ୍କର ରାଗ ଉଠୁଥାଏ । ଯାବତ୍ ଖର୍ଚ୍ଚ କରି ସବୁ ସମ୍ପତ୍ତି ଉଡ଼ାଇଦେବାକୁ ସେ ଯେପରି ବଦ୍ଧପରିକର । କେତେ କଷ୍ଟରେ ଲକ୍ଷ୍ମୀ ଆସନ୍ତି, ଟିକିଏ ହେଲେ ସେ ଜାଣନ୍ତା ! କ'ଣ ନା ଭଗବତୀ ଦେଖିବା, ଜ୍ୟୋତିଷ-ପଣ୍ଡିତକୁ ଜାତକ ଦେଖାଇବା, ଯୋଡ଼ାଏ କାମ ଏକାଠି ହୋଇଯିବ—କାହିଁକି ଯିବା ନାହିଁ ? ଖୋଜି ବସିଲେ ତ କେତେ ଦେଖଣା ମିଳିଯାଏ । ଯେପରି କଟକରେ ଦର୍ଶନ ପାଇଁ ଠାକୁରାଣୀ ନାହାନ୍ତି । ରୋଜ କାଳୀମନ୍ଦିର ଯିବାକୁ କିଏ ମନା

କରନ୍ତି । ନୟାଗଡ଼ଠାରୁ କାଳୀମନ୍ଦିର କେତେଦୂର । ରୋଜ୍ ଚାଲିବୁଲି କଲେ ସ୍ୱାସ୍ଥ୍ୟ ବି ଭଲ ରହନ୍ତା ! ନା, ସେ କଥା ହବ ନାହିଁ । ଝିଅଁ କ'ଣ ସବୁଠି ଅଛନ୍ତି କି ?

ସୌଭାଗ୍ୟ ଘୂମାଉଥିଲେ । ପିଲାଗୁଡ଼ାକ ବି କ୍ଳାନ୍ତ ହୋଇଗଲେଣି । ସ୍ତ୍ରୀ ବୃଦ୍ଧି ଯୋଗୁ ସେମାନେ ବି ହଇରାଣ ! ସେମାନେ ଆସିବା କ'ଣ ଦରକାର ଥିଲା ? ସେମାନଙ୍କର ଜାତକ ଦେଖି ପଣ୍ଡିତ ଯାହା କହିଥାନ୍ତା, ଶୁଣିକରି ଯାଇଥାଆନ୍ତେ । ନା ପଣ୍ଡିତ, ଜାତକ ଦେଖିସାରି କାଳେ କର କପାଳକୁ ଦେଖିବାକୁ ଚାହିଁବେ ! କର, କପାଳ, କୋଷ୍ଠୀ ଛକୋଟିଯାକ ସିନା ମିଶି ଭବିଷ୍ୟତ ବାହାରିବ ! ବାହାରୁଛି ତ !

ଆଉ କେତେ ବାଟ ଅଛି ?

ଏଇ ମୋଡ଼ ବୁଲିଗଲେ ହେଲା !

ଗାଁ ପାଖରେ ଧର୍ମଶାଳା ଅଛି ?

ଧର୍ମଶାଳା ଏଠି କେଉଁଠି ଆସିବ ବାବୁ ? ହଁ ଗୋଟିଏ ମିଠାଇ ଦୋକାନଟେ ଅଛି । ସେଇଠି ବିଶ୍ରାମ ନେଇ ପାରିବେ । ପାଖରେ ପୋଖରୀ ବି ଅଛି ।

ହୋଟେଲ ଦୋକାନ ଆମେ ଚାହୁଁ ନା, ରାନ୍ଧିବା ସରଞ୍ଜାମ ସବୁ ଆମ ପାଖରେ ଅଛି । ରାନ୍ଧିବା ବ୍ୟବସ୍ଥା ହୋଇ ପାରିବନି ?

ହଁ, ସେ ମନ୍ଦିର ପାଖକୁ ଗଲେ ହୋଇ ପାରିବ ପରା !

ଆମେ ମାଛ, ମାଂସ ଖାଉନୁ, ସେଥିପାଇଁ ହୋଟେଲ ଫୋଟେଲ ଆମେ ଭଲ ପାଉନୁ । ତୁମେ କେତେ ଭଡ଼ା ନେବ ?

ଶଗଡ଼ିଆ କିଛି ନ କହି ଶଗଡ଼ ଅଡ଼ାଇ ଚାଲିଥାଏ ।

ଷ୍ଟେସନଠୁ ଗାଁ କେତେ ମାଇଲ୍ ?

ଚାରିମାଇଲ ହେବ ।

ତୁମର ମାଇଲ ପାଇଁ ରେଟ୍ କେତେ ?

ଆମର ବାବୁ ରେଟ୍‌ଫେଟ୍ କିଛି ନାହିଁ । ଯିଏ ଯେତେ ମନ ଖୁସିରେ ଦେଲା ।

ନା, ନା, ତା କପରି ହେବ ? କିଛି ରେଟ୍‌ଥିବ, ତା ବାଦ୍ ସିନା ମନ ଖୁସି । ରେଟ୍ ନ ଜାଣିଲେ କେତେ ମନଖୁସି କରୁଛ ତା' ଜାଣିବ କପରି ?

ପଠାଣ ଶଗଡ଼ିଆ ବଳଦ ଓଡ଼ାଉ ଓଡ଼ାଉ ପ୍ରମାଦ ଗଣିଲା । ଲୋକଟାକୁ ଯାହା ଭାବଥିଲା, ସେପରି ନୁହେଁ ବୋଧେ । ଯା ସାଙ୍ଗରେ ହେଁ ଚେଁ ଲଗାଇବାକୁ ହେବ । କିଛି ପରବାୟ ନାହିଁ । ଏତେ ଦିନର ଅନୁଭୂତି କ'ଣ ମିଛରେ ଅଛି । ସେ ବଡ଼ ପାଟିରେ ଶେଠଙ୍କୁ ଆଶ୍ୱାସନା ଦେବା କଣ୍ଠରେ କହିଲା—ବାବୁ, ଏଡ଼େ ତରବର କିଆଁ, ଶଗଡ଼ ରହୁ, ସେତେବେଳେ ଯାହା ଦେବା କଥା ଠିକ୍ ହୋଇଯିବ ନାହିଁ ।

ଶେଠ୍ ଆଉ କିଛି କହିଲେ ନାହିଁ । ତାଙ୍କ ପାଟିରେ ସୌଭାଗ୍ୟ ଉଠି ବସିଲେଣି । କିଛି ବାଟ ଜୋରରେ ଶଗଡ଼ ଗଡ଼ିଯାଇ ମନ୍ଦିର ପାଖେ ଅଟକିଲା । ନିହାତି ଛୋଟ ମନ୍ଦିରଟାଏ, ପାଖରେ ଛୋଟ ପୋଖରୀ । ଗୁଡ଼ାଏ କନିଅର, ଟଗର, କାଠଚମ୍ପା ହୋଇ ଫୁଲଗଛ ପୋଖରୀ କୂଳେ କୂଳେ । କନକପଦ୍ମ ସବୁ ସୌଭାଗ୍ୟ ଓ ପିଲମାନେ ଲାଗି ଶଗଡ଼ରୁ ଓହ୍ଲାରୁଥାନ୍ତି ।

କେତେ ପଇସା ହେଲା ?

ଯାହା ଆପଣଙ୍କ ମନକୁ ପାଉଛି, ଦଅନ୍ତୁ ।

ଆଚ୍ଛା କଥା ! ତୁମ ଭଡ଼ା କଥା ମୁଁ କିପରି ଜାଣିବ ?

ଆପଣ ସବୁ ଜାଣନ୍ତି ।

ଶେଠ୍ ବହୁ ବିଚାର କରି ବାରଅଣା ପଇସା ମନିପର୍ସରୁ ବାହାର କରି ଶଗଡ଼ଆ ଆଡ଼କୁ ଦେଖାଇ ଦେଲେ । ପଠାଣ ଶଗଡ଼ଆ ବାରଅଣା ଦେଖି ପଛକୁ ଚାରି କଦମ୍ ଡେଇଁ ପଡ଼ିଲା । ଆଶ୍ଚର୍ଯ୍ୟରେ ତା' ମୁହଁ ଫାଟି ପଡ଼ୁଥାଏ ।

କେତେ ବାବୁ ?

ବାର ଅଣା ।

ଷ୍ଟେସନରୁ ଏଠାକୁ ଆସିବାକୁ ବାରଅଣା ? କ'ଣ ବାବୁ ସପନ ଦେଖୁଛ, ନା ଥଟ୍ଟା କରୁଛ ?

ପଠାଣ ଶଗଡ଼ଆ ପାଟିରେ ଯିବା ଆସିବା କରୁଥିବା ଲୋକେ କୌତୂହଳୀ ହୋଇ ସେମାନଙ୍କୁ ଘେରି ରୁଣ୍ଡ ହେବାକୁ ଲଗିଲେ ।

ଆଉ କେତେ ?—ଶେଠ୍ ଖିଙ୍କାରି ହୋଇ ପଚାରିଲେ ।

ପାଞ୍ଚଟି ଟଙ୍କା ହେଉଛି ବାବୁ !

ତା'ପରେ ଶେଠ୍‌ଙ୍କ ଛବି ଚକ୍ଷାରର ପାଳି । (ସେ ଚକ୍ଷାରରେ କ୍ରୋଧ, ଆଶ୍ଚର୍ଯ୍ୟ, ଭୟ ସବୁ ମିଶି ରହିଥିଲା ।)

ପାଞ୍ଚ ଟଙ୍କା ! ! କ'ଣ ଗାଁକୁ ନଆ ଆସିଛୁ ବୋଲି ଲୁଟି କରି ନେବ କି ? ଟଙ୍କାଟାଏଠୁ ମୁଁ ପାହୁଲାଏ ବି ବେଶି ଦେଇ ପାରିବି ନାହିଁ ।

ଗୁରିମାଇଲ ରାସ୍ତାକୁ ଟଙ୍କାଏ ?

ତାକୁ ଆଉ ଗୁରିଅଣା ପାଇସା ଦେଇ କାହିଁକି ବିଦା କରି ଦେଉନ ? ଏଠି ଆଉ କଛି କାମ ନାହିଁ ? ଖାଲି ତା'ର ସାଙ୍ଗରେ ଝକ୍ ଝକ୍ ହେଉଥିବା ?—ସୌଭାଗ୍ୟ ଶେଠ୍‌ଙ୍କ ଉପରେ ବିରକ୍ତ ହୋଇ କହିଲେ ।

କି ଗୁରଣା ମ ? ପାଞ୍ଚ ଟଙ୍କାରୁ ମୁଁ ପାହୁଲାଏ କମ୍ ନେବି ନାହିଁ । କ'ଣ ମୋଫତ ନେଉଛ କି ? ହକ୍ ଖଟିଲି, ଦୁଇ ଦୁଇଟା ଜନ୍ତୁଙ୍କୁ ଖଟାଇଲି, ଗୁରିଅଣା ଦୁଇଅଣା କ'ଣ କହୁଛ ?

ଗହଳି ମଧ୍ୟରୁ ଜଣେ କେହି ମଧ୍ୟସ୍ଥ ହୋଇ କହିଲା—ଦିଅନ୍ତୁ ବାବୁ ଗୁରିଟା ଟଙ୍କା ଦେଇ ଦିଅନ୍ତୁ । ଗରିବ ଲୋକ, ଆପଣମାନଙ୍କଠୁଁ ତ ମାଗି ଯାଚି ଚଳିବା କଥା ! ହେ ହମିଦ୍ ! ବାବୁଙ୍କ ପାଖେ ବିନମ୍ର ହୋଇ ମାଗେ । ଫୁଁ ଫୁଁ ହେଲେ କ'ଣ କଛି ମିଳେ ?

ସେ ମଧ୍ୟସ୍ଥଙ୍କର କଥା ନ ସରୁଣୁ ଆଉ ଜଣେ ଦୁଇଜଣ ପାଳିଆ ବାହାରିପଡ଼ି କହିଲେ—ହଁ ବାବୁ, ପାଞ୍ଚ ମାଇଲ୍ ରାସ୍ତାକୁ ତ ଗୁରିଟଙ୍କା ରେଟ୍ ।

ଆଉ କଛି ଉପାୟ ନ ଥିଲା । ଶେଠ୍ ଟଙ୍କା ବାହାର କରୁ କରୁ ସୌଭାଗ୍ୟଙ୍କ ଆଡ଼କୁ ଏପରି ଏକ ଦୃଷ୍ଟି ଦେଲେ ଯେ ସୌଭାଗ୍ୟଙ୍କ ସମେତ ସବୁ ପିଲା କାନ୍ଦ କାନ୍ଦ ।

( ୨ )

ମାନା ପଣ୍ଡିତ—ମାନା ଆଗୃର୍ଯ୍ୟ ଶେଠ୍‌ଙ୍କ ଜାତକଟାକୁ ଦାଣ୍ଡ ଘରଟାରେ ଖଡ଼ରେ କାଟି ପକାଇ—ଅଧେ ଘର ମାଡ଼ି ଗଲ୍‌ଣି ଦଶା, ଅନ୍ତର୍ଦ୍ଦଶା, ପ୍ରତ୍ୟନ୍ତର ଦଶା ସବୁ କଷିବାରେ—କଣ୍ଟୁ ସମସ୍ୟାପାଇଁ କ'ଣ ମନେ ମନେ ଚିନ୍ତା କରି ଶେଷରେ ଫଳାଫଳ କହିବାପାଇଁ ଠିଆ ହେଲା। ଗୋଟେପଟେ କାନ୍ଥକୁ ଆଉଜି ଅତିଥିମାନେ—ଯେପରି ନଡ଼ଆଗଛ ପବନ ଅତିଥିମାନଙ୍କ ଦେହରେ ବାଜି ସେମାନଙ୍କୁ ଆରାମ ଦେବ ସେପରି ବ୍ୟବସ୍ଥା ମାନା ପଣ୍ଡିତ ପ୍ରଥମରୁ କରି ସାରିଥାଏ। ଦ୍ୱିପ୍ରହରେ ଶାସନ-ଘରଗୁଡ଼ିକରେ ନଡ଼ିଆତୋଟା ପବନସୁଖ କିଏ ନ ଜାଣେ ? ପିଲା ଦୁଇଟି ଶୋଇ ପଡ଼ିଛନ୍ତି। ଆରଟାର ଆଖି ଲାଲ୍ ଲାଲ୍ ଦିଶୁଛି। ସୌଭାଗ୍ୟ ଚକାମାଣ୍ଡି ମାଡ଼ି ବସିଛନ୍ତି। ପ୍ରଥମେ ଆସି ମାନା ପଣ୍ଡିତର ଚେହେରା ଦେଖି ସେ ଭାବିଥିଲେ ଏତେ ଟଙ୍କା ଖର୍ଚ୍ଚ କରି ଆସିବା ତାଙ୍କର ବ୍ୟର୍ଥ ହୋଇଗଲା କି ? ନିପଟ କଳା, ଦେହର ହାଡ଼ ଗଣି ହୋଇ ଯାଉଛି; ଏମାନେ ତା ଦୁଆରେ ପହଞ୍ଚିବା ବେଳକୁ ଗୋଟାଏ ବେଳେ ମୁଢ଼ିଗୁଡ଼ାଏ ଭୋଗେଇରେ ସେ ଚୋବାଉଥାଏ। ପିନ୍ଧାଲୁଗା ବୋଇଲେ ମଇଳା ଗାମୁଛାଟାଏ, ତା ପୁଣି ଚିରା, ଶରୀର ଭଲ କରି ଲୁଚୁନି। ବାରଣ୍ଡାଟାରେ ଯାବତ୍ ମଇଳା, ଆଖପାଖରେ ଚାମଡ଼ା ଶୁଖିଆର ବାସ୍ନା। ଶେଠ୍‌ଙ୍କ ପେଟ ଭିତର ଘୃଣାରେ ଦୁହିଁ ହୋଇଗଲା; କିନ୍ତୁ ଯାହା ହେଉ ଦାଣ୍ଡଘରଟାରେ ଗଦା ହୋଇଥିବା ତାଳପତ୍ର ବିଡ଼ା ଦେଖି ଓ ଗୋଟିଏ ଜାତକ ଉପରେ ଅଧା ଘରଯାଏଁ ଅଙ୍କ କଷା ହେବା ଦେଖି ସୌଭାଗ୍ୟ ଖୁସି ହୋଇଗଲେ। ଖଡ଼ିଗୋଟାକ ଯେତେ ଯେତେ ବେଶୀ ଘୋରି ହୋଇ ଯାଉଥାଏ, ସେତେ ସେତେ ସୌଭାଗ୍ୟଙ୍କର ବିଶ୍ୱାସ ଜ୍ୟୋତିଷ-ବିଦ୍ୟା ଉପରେ, ମାନା ପଣ୍ଡିତ ଉପରେ ବଢ଼ୁଥାଏ। ଧୂଳି ଭିତରେ ମାଣିକ୍ୟ ଲୁଚିଛି ପରା !

ମାନା ପଣ୍ଡିତ ଠିଆ ହୋଇ ପଡ଼ି କ'ଣ କହିବାକୁ ଯାଉଛନ୍ତି, ସୌଭାଗ୍ୟଙ୍କର ଚିତ୍ତ ଆନନ୍ଦରେ ବୋଳି ହୋଇଗଲା । ତାଙ୍କୁ ଯେପରି ଲାଗିଲା ଇତିହାସରେ ଗୋଟାଏ ଖୁବ୍ ବଡ଼ ମହତ୍ତ୍ୱପୂର୍ଣ୍ଣ କଥା ସେହିକ୍ଷଣି ଘଟିବାକୁ ଯାଉଛି !

ବାବୁ ! ପ୍ରଥମେ ମୁଁ ତୁମର ଅତୀତ କଥା କହିବି । ଯାହା ଯାହା ଘଟି ଯାଇଛି ତା ବର୍ଣ୍ଣନା କରିବି । ଯାହା ବିଷୟରେ ମୁଁ କହିଲେ ତୁମେ ମିଛ କି ସତ ସଙ୍ଗେ ସଙ୍ଗେ ଜାଣି ପାରିବ । ଯଦି ଅତୀତ କଥା ମୋର ସତ ହୁଏ, ତା ହେଲେ ମୁଁ ଭବିଷ୍ୟତ୍ କଥା କହିବି; ନ ହେଲେ ନାହିଁ । ତେଣୁ ମୁଁ କହୁଥିବାବେଳେ କେଉଁଠି ମୋର ଭୁଲ୍ ହେଲେ ତୁମେ ମୋତେ ଚେତାଇ ଦେବ । ମୁଁ ରହିଯିବି ।

ପଣ୍ଡିତ ଏତିକି କହିସାରି ଦମ୍ ନେଲା ।

ବାବୁ ! ତୁମେ ପୋଷ୍ୟପୁତ୍ର ହୋଇ କାହାଘରକୁ ଆସିଛ । ନ ହେଲେ ତୁମେ ଦୁଇଭାଇ ?

ଶେଠ୍ ମୁଣ୍ଡ ଲାଡ଼ିଲେ ।

ତୁମର ପଢ଼ାପଢ଼ି ବେଶି ନାହିଁ । ଖୁବ୍ ପିଲାଦିନୁ ତୁମକୁ ସଂସାର ସାଙ୍ଗରେ ଲଢ଼ିବାକୁ ପଡ଼ିଲା ।

ହଁ ହଁ ।

ବୃଷ ରାଶି, ସିଂହ ଲଗ୍ନ । ଅଙ୍କ କଥା ପଡ଼ିଛି । ତୁମେ ବହୁତ ଲୋକଙ୍କୁ ମାଡରେ ଜିତିଛ, ସେମାନଙ୍କୁ ସର୍ବସ୍ୱାନ୍ତ କରି ଦେଇଛ । ତୁମ ସାଙ୍ଗରେ ଶତ୍ରୁତା କରି କେହି ତିଷ୍ଠି ପାରିବ ନାହିଁ ।

ଶେଠ୍‌ଙ୍କ ଚିତ୍ତ ଗର୍ବରେ ସ୍ଫୀତ ହୋଇ ଉଠିଲା ।

ଆଠଟିଯାଏଁ କେସ୍ ହାଇକୋର୍ଟଯାଏଁ ଯାଇଛି, ସବୁଥିରେ ମୁଁ ଜିତିଛି । ତା ବାଦ୍ ଇନ୍‌କମ୍-ଟ୍ୟାକ୍‌ସ, ସେଲ୍‌ସଟ୍ୟାକ୍‌ସ କେସ୍ ତ କେତେ ।

ସେଇ କଥା । ବର୍ତ୍ତମାନ ତୁମେ ଲକ୍ଷାଧିକ ଅର୍ଥର ସ୍ୱାମୀ ।

ଏତକ କହି ଦେଇ ମାନା ପଣ୍ଡିତ ପୁଣି ଦମ୍ ନେଇ ଶେଠ୍‌ଙ୍କ ଆଡକୁ, ତା'ପରେ ସୌଭାଗ୍ୟଙ୍କ ଆଡ଼କୁ ବିଜୟୋଲ୍ଲାସରେ ଚାହିଁଲା । ପିଲାମାନେ ମଧ୍ୟ ତା ଦୃଷ୍ଟିରୁ ବାଦ୍ ଗଲେ ନାହିଁ । ଶେଠ୍ ଦମ୍ପତି କିନ୍ତୁ ଲକ୍ଷେ ଟଙ୍କା ଶୁଣି ଗମ୍ଭୀର ହୋଇଗଲେ । କେଉଁଠି କାଳେ ଇନ୍‌କମ୍-ଟ୍ୟାକ୍‌ସବାଲା କାନ ପାରିଥିବେ ।

ଆମେ ଆଜି କଟକ ଫେରିଯିବୁ ଯେ ! ପଣ୍ଡିତ ଜୀ ! ଆହୁରି ଅନେକ ଜାତକ ଅଛି । ଜଲ୍‌ଦି ଜଲ୍‌ଦି କହନ୍ତୁ । ଏତେ ଦମ୍ ନେଲେ ଚଳିବ ? ଅତୀତ ସବୁ ପ୍ରାୟ ଠିକ୍ ହେଉଛି, ଏଥରକ ଭବିଷ୍ୟତ୍ କଥା କହନ୍ତୁ ।

ଭବିଷ୍ୟତ୍ କଥା କହନ୍ତୁ ବୋଲି ମାନା ପଣ୍ଡିତ ଶୁଣିଦେବା ମାତ୍ରେ ତା'ର ମୁହଁ ଆନନ୍ଦରେ ଉଦ୍ଭାସିତ ହୋଇ ଉଠିଲା । ତା ପାଟିରୁ ଏକ ସରସ ଚିତ୍କାର ଅଜାଣତରେ ବାହାରି ପଡ଼ିଲା । ତା'ପରେ ଦେଖାଗଲା ସେ ଅନର୍ଗଳ ଶ୍ଳୋକ ବୋଲି ଚାଲିଛି—ଆର୍ଯ୍ୟ ସିଦ୍ଧାନ୍ତ, ଉତ୍ତରକାଳାମୃତ, ଗର୍ଗ ଜାତକ—ସବୁଥିରୁ ଶ୍ଳୋକ ଲଳିତ ସରସ ହୋଇ ଝରି ପଡ଼ୁଛି । ଶେଠ୍ ରୋମାଞ୍ଚିତ ଶରୀରରେ ଶ୍ଳୋକ ଶୁଣୁଥାନ୍ତି । ଅର୍ଥ ସେ ବୁଝିବା ଦୁଷ୍କର । କେବେ ସେ ପାଠ ପଢ଼ିଥିଲେ ଯେ କାଳିଦାସ,

ପରାଶରେ, ଜୈମିନୀଙ୍କ ସଂସ୍କୃତ, ବିଦ୍ୟାଗାରମା ବୁଝିବେ ? କିନ୍ତୁ ଦେଖ, ସମସ୍ତେ କିପରି ତାଙ୍କର ପ୍ରଶଂସା କରି ଶ୍ଳୋକ ଲେଖିଛନ୍ତି ! ପ୍ରାୟ ଦଶମିନଟ୍ କାଳ ସୁନ୍ଦର ସଂସ୍କୃତରେ ଶ୍ଳୋକ ବୋଲି ସାରିବା ବେଳକୁ ମାନା ପଣ୍ଡିତ ଦୁଆରେ ଗୋଟାଏ ପିଲା, ଦୁଇ ତିନିଜଣ ପୁରୁଷା ବ୍ରାହ୍ମଣ ଠିଆ । ମାନା ପଣ୍ଡିତ କିନ୍ତୁ ସେମାନଙ୍କ ପ୍ରତି ଦୃଷ୍ଟି ନ ଦେଇ ଘରଟାସାକ ନାଚି ନାଚି ବୋଲିଥିବା ଶ୍ଳୋକର ଅର୍ଥ କରୁଥାଏ—ସପ୍ତମରେ ପଞ୍ଚମାଧିପତି ବୃହସ୍ପତି, ଶନିଷ୍ଟରଙ୍କ ସହିତ—ଦୁର୍ଲ୍ଲଭ ରାଜଯୋଗ । ଯେଉଁ ଜାତକରେ ଏପରି ରାଜଯୋଗ ଦେଖାଯାଏ, ସେ ବ୍ୟକ୍ତି ଚକ୍ରବର୍ତ୍ତୀ ହୋଇ ସଂସାର ଶାସନ କରେ, ତା'ର କୋଟି କୋଟି ସୈନ୍ୟ ସାରିପୃଥିବୀ ଖେଳାଇ ହୋଇଯାନ୍ତି, ସେମାନଙ୍କ ପାଦଧୂଳିରେ ଆକାଶ ଅନ୍ଧକାର ହୋଇଯାଏ······ ।

ଶେଠ୍‌ଙ୍କ ରୋମାଞ୍ଚ ବଢ଼ି ଗ୍ଭଲିଥାଏ । ସେ ସମ୍ଭାଳି ନ ପାରି କହିଲେ—ଆମେ ବୈଶ୍ୟ ଲୋକ । ଆମେ କ'ଣ ରାଜ୍ୟଶାସନ ଗ୍ଭହୁଁଛୁ ? ବ୍ୟାପାରରେ ଆମର ଉନ୍ନତି ଅଛି ନା ନାହିଁ ?

ମାନା ପଣ୍ଡିତ ହସିଲା । ପୁଣି ଶ୍ଳୋକ ବୋଲି ସେ ବୁଝାଇଲା—ରାଜଯୋଗ ଥିଲେ ଲୋକ ରାଜା ହୋଇ ଯା'ନ୍ତିନ ! ଯେଉଁଥିରେ ହେଲେ ଶୀର୍ଷସ୍ଥାନକୁ ଗଲେ ତାକୁ ରାଜା ହେଲା ବୋଲି କୁହାଯାଏ । ତୁମେ ବେପାରୀ—ବେପାର ବାଣିଜ୍ୟରେ ତୁମେ ଯଦି ଗୋଟେ ବର୍ଷ ଖୁବ୍ ଲାଭ କର ତାହାହେଲେ ତୁମେ ରାଜଯୋଗ ଭୋଗ କଲ ବୋଲି କୁହାଯିବ ।

ଆଚ୍ଛା ହେଉ, ଏଥରକ ଟିକିଏ ସୌଭାଗ୍ୟ ଜାତକ ଦେଖନ୍ତୁ ।

ସେହି ସମୟରେ ବାରଣ୍ଡାରୁ କେହି ଜଣେ ଅନ୍ୟ ଜଣକୁ କହୁଥିବା ଶୁଣାଗଲା—ହଇଓ ! ମୁଢ଼ି ଖାଇ ଖାଇ ଉପାସ ରହି ମାନା ପଣ୍ଡିତର ଏତେ ଦମ୍ କୁଆଡ଼ୁ ଆସୁଛି ? ଘର ଖଣ୍ଡକରେ ତ ସେ ଘଣ୍ଟେ ହେଲା ଖାଲି ନାଚୁଛି, ଗାଉଛି !

ଅନ୍ୟ ଜଣକ କହିଲେ—ଜ୍ୟୋତିଷ ବୋଇଲେ ତ ବାପୁ ! ତାକୁ ଲକ୍ଷେ ଟଙ୍କା ପାଇଲା ପରି ଲାଗୁଥିବ ଦିଶ ! ସେଥିପାଇଁ ପରା ଘର ସଂସାର କଲା ନାହିଁ । କହିଲା, ତା ଜାତକରେ ସ୍ତ୍ରୀ ନାହିଁ । କୁଆଡ଼େ ଜାତକର ଫଳାଫଳ କହି ଲୋକଙ୍କ ସେବା ସେ କରୁଛି, ମହାନ ପୁଣ୍ୟ ଅର୍ଜନ କରୁଛି ।

ହଁ ହେ, ସକାଳେ ପେଟକୁ ମାରୁଥାଏ ଯେ ନନା'ଲୋ ବୋଉ'ଲୋ ହେଉଥିଲା । ଏବେ ଦେଖ ପଞ୍ଜୁଡ଼ୋଳକୁ ପଟ୍ଟାଆରରେ ବାବ୍‌ଭୋଗିର ନାଚିବା ପରି ଖାଲି ନାଚି ଯାଉଛି !

ଯାହା କହ, ଜ୍ୟୋତିଷ ବିଦ୍ୟାରେ ହିଁରା ଖଣ୍ଡେ ସିନା !

ହଁ, ମୋତେ ତେବେ ଯାହା ଯାହା କହିଥିଲା, ସବୁ ମିଛ ହେଲା ।

ମାନା ପଣ୍ଡିତ କନ୍ତୁ କଚ୍ଛୁ ନ ଶୁଣିବା ପରି ସୌଭାଗ୍ୟଙ୍କ କୋଷ୍ଠୀର ଫଳାଫଳ କହି ଚାଲିଥାଏ । ତା'ର ଶ୍ଳୋକ ବୋଲା, ନୃତ୍ୟ ଧୀରେ ଧୀରେ ସୌଭାଗ୍ୟଙ୍କର ଜାତକକୁ କେନ୍ଦ୍ରକରି ଆରମ୍ଭ ହୋଇ ଆସୁଥାଏ ।

ଶେଠ୍ କନ୍ତୁ ଆଉ କଚ୍ଛୁ ଶୁଣୁ ନ ଥାନ୍ତି । ତାଙ୍କୁ ଖାଲି ଲାଗୁଥାଏ, ସୌଭାଗ୍ୟକୁ ପ୍ରଶଂସା କରି ପଣ୍ଡିତ କ'ଣ ଗୁଡ଼ାଏ କହୁଛି । ବାଜେ କଥା ସବୁ । କ'ଣ ସେ ନୂଆ କଥା କହୁଛି ? ଜଣେ ବେପାରୀ

ପକ୍ଷରେ ଧନୀ ହେବା କ'ଣ ଅସମ୍ଭବ କଥା ! ଗୃହକର୍ତ୍ତା ହୋଇନ ଯେ ଟଙ୍କାରେ ସୀମା ଅଙ୍କା ହୋଇଯାଇଛି ଆଗରୁ । ଜଣେ ବେପାରୀ ଭିଖାରୀ ହୋଇ ଯାଇପାରେ, ଲକ୍ଷାଧିପତି ମଧ୍ୟ । ଯାହା ଯାହା ପଣ୍ଡିତ କହିଲେ, ଜଣେ ବୁଦ୍ଧିମାନ୍ ଲୋକ ସବୁ ଅନୁମାନ କରି କହି ଦେଇପାରେ । ତେବେ କାହିଁକି ସେ ପଣ୍ଡିତ କହୁଥିଲାବେଳେ ଏତେ ଜୋରରେ ମୁଣ୍ଡ ଲାଉ- ଥିଲେ ? ନିଜ ଉପରେ ତାଙ୍କର ରାଗ ଆସିଲା । ସୌଭାଗ୍ୟ ବି ସେହିପରି ମୁଣ୍ଡ ଲାଉଛି !

ଶେଠ୍ ଚିନ୍ତିତ ହୋଇ ପଡ଼ିଲେ । ସେହି କଥାଗୁଡ଼ିକ ଉପରେ ତ ପଣ୍ଡିତ ତା'ର ପାରିଶ୍ରମିକ ଟଙ୍କା ବଢ଼ାଇ ଦେଇପାରେ । ବର୍ତ୍ତମାନ ସେ ପାରିଶ୍ରମିକ କେତେ କହିବ କେଜାଣି ? ସୌଭାଗ୍ୟ ଯେପରି ଉତ୍ସାହିତ ହୋଇ ମୁଣ୍ଡ ଲଡ଼ାଲଡ଼ି କରୁଛି, ସେ ଭାବୁଥିବ ସେ ସବୁଠାରୁ ବଡ଼ ଜ୍ୟୋତିଷ । ଯାହା କହୁଛି ଠିକ୍ କହୁଛି । ପାରିଶ୍ରମିକ ତା ମୁଣ୍ଡ ଭିତରେ ବଢ଼ି ଚାଲିଥିବ । ଏବେ ପନ୍ଦରଟଙ୍କା ଉପରେ ଖର୍ଚ୍ଚ ହେଲାଣି ଫାଲତୁ କଥାରେ ପୁଣି । କ'ଣ ହେବ କେଜାଣି ? ଯଦି ଏ ପଣ୍ଡିତ ପଚିଶ ତିରିଶି ମାଗି ଦିଏ ଓ ପୁଣି କେହି ଶାସନଭିତରୁ ଆସି ଭଲଲୋକୀ ଆରମ୍ଭ କରିଦିଏ ଓ ସାଙ୍ଗେ ସାଙ୍ଗେ ପାଳିଆ ବାହାରି ପଡ଼ନ୍ତି, ତାହାହେଲେ ସରିଲା । ନାଃ—କିଛି ଉପାୟ ଚିନ୍ତା କରିବାକୁ ହେବ । ଶେଠ୍‌ଙ୍କ ବେପାରୀ ବୁଦ୍ଧି କାମ କରିବାକୁ ଲାଗିଲା । ଇନ୍‌କମ୍-ଟ୍ୟାକ୍‌ସ ଅଫିସର ହାରିଛି, ସେଲ୍‌ସ୍‌ଟ୍ୟାକ୍‌ସ ଅଫିସର ହାରିଛି । କୋର୍ଟରେ ଜଜ୍ ମୁଣ୍ଡିଆଲକୁ ପୋଡି ଦେଇଛି । ଗ୍ରାମର ବ୍ରାହ୍ମଣଟାକୁ ଜିତି ହେବନାହିଁ ! ସେହି ସମୟରେ ସୌଭାଗ୍ୟର ଅନ୍ତର୍ଦ୍ଦଶା ଦେଖି ମାନା ପଣ୍ଡିତ ହସି ହସି କହୁଥିଲା—ଝିଅ, ଆରବର୍ଷ ଏହି ସମୟକୁ ପାଇ ସାରିଥିବୁ । ହଜାରେ, ଦୁଇ ହଜାର ନୁହେଁ, ବହୁତ··ବହୁତ । ତୋ କାନ୍ଧରେ ମା କମଳା ବାସ

କରିଛନ୍ତି । ଆରବର୍ଷକୁ ଆକସ୍ମିକ ଧନପ୍ରାପ୍ତିର ଯୋଗ ଅଛି । ଷଷ୍ଠ ଅଷ୍ଟମ ବ୍ୟୟସ୍ଥ ଗ୍ରହ—ତଥାପି ସେମାନେ ଉଚ୍ଚ ଉଚ୍ଚାଂଶ ହୋଇ ବଳଶାଳୀ । ଦେଖି ଲଟାରୀ ହେଉ ବା······

ସେଠ୍ ସେହି ସମୟରେ ପାଟିକରି ଉଠିଲେ—

କ'ଣ କହିଲେ, କ'ଣ କହିଲେ ? ଆକସ୍ମିକ ଧନପ୍ରାପ୍ତି ? ସେପରି ଯୋଗ ତ ମୋର କ ସୌଭାଗ୍ୟ କୋଷ୍ଠୀରେ ଆଦୌ ନାହିଁ । ଗତବର୍ଷ ସେହି କଥାକୁ ପରିଷ୍କାର କରି ମୁଁ କାଶୀର ଜଣେ ପଣ୍ଡିତଙ୍କୁ ପଚାରିଥିଲି । ଲଟାରୀ ଫଟାରୀ ଯୋଗ ଆମ ଘରେ କାହାରି ହେଲେ ନାହିଁ ବୋଲି ସେ କହିଥିଲେ, ଯାହା ଅର୍ଜିବୁ, ଝାଳ ଦେଇ ପରିଶ୍ରମ କରି ।

ମାନା ପଣ୍ଡିତ ଶେଠଙ୍କ ଅଚାନକ ଆକ୍ରମଣରେ ଆହୁରି ମ୍ଳାନ ହୋଇ ରହିଗଲେ । ସେ ଶେଠ୍‌ଙ୍କୁ ଗୃହୁଁ ଥିବାବେଳେ ଶେଠ୍ ପୁଣି କହିଲେ, କାଶୀର ସେହି ପଣ୍ଡିତ ପରିଷ୍କାର କରି ଏ କଥା କହିଛନ୍ତି । ତାଙ୍କ ପାଖରେ ଭୃଗୁସଂହିତା ଥିଲା ।

ଅଃହେ ! କ ଭୃଗୁସଂହିତା ମାନା ପଣ୍ଡିତଙ୍କୁ ଦେଖାଉଛ ହେ ! ଆକସ୍ମିକ ଧନପ୍ରାପ୍ତି ଯୋଗ ନାହିଁ ? ଷଷ୍ଠ ଅଷ୍ଟମ ବ୍ୟୟସ୍ଥ ରାଜଯୋଗ ତାହାହେଲେ ବୃଥା ଯିବ ? ଆକାଶରୁ ଗ୍ରହମାନେ ଉଭେଇ ଗଲେଣି ?

ଗ୍ରହକଥା ସବୁ କ'ଣ ସତ ହେଉଛି ? ପୁଣି ଆଉ ଜଣେ ଜ୍ୟୋତିଷ ପଣ୍ଡିତ ପରା ଅନ୍ୟ ପ୍ରକାରରେ କହୁଛନ୍ତି । ଆପଣ ଆଉଥରେ ଭଲ କରି ଦେଖନ୍ତୁ । ଶ୍ଳୋକ କ'ଣ ଆପଣ ଯାହା କହୁଛନ୍ତି ସେ କଥା କହୁଛି ?

ସୌଭାଗ୍ୟ ଖ୍ରିଷଣ ଭବେ ରାଗରେ ଶେଠ୍‌ଙ୍କ ଆଡ଼କୁ ଗୃହୁଁ ଥାଆନ୍ତି । ପଣ୍ଡିତ ଆହୁରି କେତେ କଥା କହୁଥାନ୍ତି, ମଝିରେ ଇଏ ଭୂଷକନା ବାହାରି ପଡ଼ ସବୁ ବଗାଡ଼ିବା ଉପରେ । ସ୍ତ୍ରୀ ବୁଦ୍ଧି ତାଙ୍କର, ଗ୍ରେଟିଆ ମୁଣ୍ଡଟି ତାଙ୍କର, ସେ କପରି ଶେଠ୍‌ଙ୍କ ହିସାବ କତାବ କଥା ବୁଝିବେ ! ସେ ଖାଲି ରାଗରେ ଫଁ ଫଁ ହେଉଥାଆନ୍ତି ।

ମାନା ପଣ୍ଡିତ ନଜର ଜଙ୍ଘ ଉପରକୁ ଜୋର୍‌ରେ ଚ୍ୟାପୁଡ଼ାଟାଏ ମାରି କହିଲ—ଅଲବତ୍ ପାଇବ । ତୁମର ସ୍ତ୍ରୀ ଆକସ୍ମିକ ଭାବରେ ବହୁତ ଗୁଡ଼ାଏ ସମ୍ପତ୍ତି ପାଇବେ, ପାଇବେ ପାଇବେ ! ଏହା ଆମର ନିବାର ସତ୍ୟ । ଗ୍ରହମାନେ ଯାହା କହିବେ ତାହା ମିଛ ?

ମୁଁ କହୁଛି ସେ ଲଟାରି ପାଇବେ ନାହିଁ । କାଶୀର ପଣ୍ଡିତ ଠିକ୍ କହୁଥିଲ ।

ଆଚ୍ଛା ! ଏଇ କଥା ରହିଲ ?

ତୁମେ ବାଜେ କଥାରେ କାହିଁକି ପାଟି କରୁଛ ଶୁଣେ ?— ସୌଭାଗ୍ୟ ଶେଠ୍‌ଙ୍କ ଉପରେ ବିରକ୍ତ ହେଲେ ।

ଆଉ କ'ଣ ଠିକଏ କହିବେଟି ?

ସୌଭାଗ୍ୟ ପୁଣି ପୁଲକିତ ହେବାପାଇଁ ନଜକୁ ସଜାଡ଼ି ନେଇ ଅପେକ୍ଷା କଲେ ।

ଯାହା କହ, ଜ୍ୟୋତିଷ ଶାସ୍ତ୍ର ମିଛ । ସବୁ କପୋଳକଳ୍ପିତ କଥା । ତୁମର ଅନ୍ଧ ବିଶ୍ୱାସଯୋଗୁଁ ମଣିଷ ଏତେ ହଯ଼ରାଣ । ଚୁପ୍ କ'ଣ ରହିବାକୁ କହୁଛ ?

କ'ଣ କହୁଲ, କ'ଣ କହୁଲ ବାବୁ ?

ମାନା ପଣ୍ଡିତ ବସିବା ଜାଗାରୁ ଠିଆ ହୋଇପଡ଼ିଲ ।

ସେ ଲଟାରୀ ପାଇବେ ନାହିଁ । କାଶୀର ଜ୍ୟୋତିଷୀ ଠିକ୍ କହୁଥିଲେ ।

ଯଦି ପାଇବେ ?

ମୁଁ ଆପଣଙ୍କୁ ମାଲମାଲ କରି ଦେବି ।

ମାନା ପଣ୍ଡିତ ଫିକ୍କରି ହସି ଦେଲ ।

ତୁମେ ଚୁପ୍ ହେଲ ! ପଣ୍ଡିତଜୀ, ପିଲମାନଙ୍କ କୋଷ୍ଠୀ ଟିକଏ ଦେଖି ଦିଅନ୍ତେ । ବେଶି ହିସାବର ଦରକାର ନାହିଁ । ଖାଲି ମୋଟାମୋଟି······

ପଣ୍ଡିତ ପିଲଙ୍କ କୋଷ୍ଠୀ ଦେଖି ଏଣୁ ତେଣୁ କିଛି କହିବା ପରେ ଟ୍ରେନ୍ ବେଳ ହୋଇ ଯାଉଥିବା ଦେଖି ଶେଠ୍, ସୌଭାଗ୍ୟ ସମସ୍ତେ ଉଠିଲେ । ଦିଅଁ ଦେଖା ଆହୁରି ବାକି ଅଛି । ସେତେବେଳକୁ ବାରଣ୍ଡାରେ କେହି ନ ଥିଲେ । ଅନେକବେଳୁ ଦେଖଣାହାରୀମାନେ ଚାଲି ଯାଇଥିଲେ । ମାନା-ପଣ୍ଡିତର କ୍ରୋଧ, ଅଭିମାନ ମଧ୍ୟ ସେତେବେଳକୁ ଶାନ୍ତ ହୋଇ ଆସିଥିଲ । ଗଲ ଅଇଲବେଳେ ରାଗ କ'ଣ, ପୁଣି ଅତିଥିମାନଙ୍କ ଉପରେ ? କେଡ଼େ ସଂସାର ! ତହିଁରେ କେତେ କେତେ ଲୋକ ଗ୍ରହରୂପୀ ଜନାର୍ଦ୍ଦନଙ୍କଯୋଗୁଁ କେତେ ସ୍ୱଭାବର, କେତେ ରୂପର, କେତେ ପ୍ରକାରର !! ମାନା ପଣ୍ଡିତକୁ କ'ଣ ସେ କଥା ଅଜଣା ?

ମାନା ପଣ୍ଡିତ ଖୁବ୍ ବିନମ୍ରସହକାରେ ସେମାନଙ୍କୁ ଦାଣ୍ଡକୁ ବାଟ ବଢ଼େଇ ଦେବାକୁ ଆସିଲ । ଆଜ ଖୁବ୍ ପରିଶ୍ରମ ସେ କରିଛି । ସାରା ଦିପ୍ରହରଟା ଲଗି ଫଳ କଷିଛି । ଶେଠ୍, ସୌଭାଗ୍ୟଙ୍କର ଭବିଷ୍ୟତ ବିଷୟରେ କେତେ କଥା ସେ କହିନ । ନିଜର ବିଦ୍ୟା, ସଠିକ . ଗଣନା

ଓ ପରିଶ୍ରମକୁ ପ୍ରୟୋଗ କରିବାପାଇଁ ସେ ଆଜ ସୁଯୋଗ ପାଇଥିବାରୁ ଖୁବ୍ ଆନନ୍ଦିତ । ସତରେ ଖୁବ୍ ଆନନ୍ଦିତ ।

ମାନା ପଣ୍ଡିତର ନମ୍ର ବ୍ୟବହାରରେ ଖୁସି ଦେଖି କିନ୍ତୁ ଶେଠ୍ ନିହାତି ବିଚଳିତ ହେବାକୁ ଲାଗିଲେ । କିପରି ସେ ପାରିଶ୍ରମିକ କଥା ଆରମ୍ଭ କରିବେ, କିପରି ତାହା ଗୋଟିଏ ଟଙ୍କାରୁ ଅଧିକ ହେବନାହିଁ ସେ ବିଷୟ ତାଙ୍କର ବୁଦ୍ଧିକୁ ଆସୁ ନ ଥିଲା । ତଥାପି ଲିଟାଣି ନେଇ ହୋଇଥିବା ବିବାଦକୁ ସେ ଭୁଲି ନ ଥାନ୍ତି । କହିଦେବେକି ଲିଟାଣି ମିଳିବା ପରେ ଯାହା ଦେବା କଥା ଦେବେ । ସେତିକବେଳକୁ ଗଣନାର ସତ ମିଛ ପରୀକ୍ଷା ହୋଇଯିବ; କିନ୍ତୁ ବ୍ରାହ୍ମଣର ଶାନ୍ତ ସରଳ ମୁହଁକୁ ଚାହିଁ ତାଙ୍କର ସାହାସ ହେଉ ନ ଥାଏ । ବ୍ରାହ୍ମଣଟା ସତରେ କେତେ ଶାନ୍ତ ସରଳ !

ଆପଣଙ୍କ ପାରିଶ୍ରମିକ କେତେ ?

ଶେଠ ସାହାସ କରି ପଚାରି ଦେଲେ ।

ପାରିଶ୍ରମିକ ?

ମାନା ପଣ୍ଡିତ ହସିଲା । ଶେଠ୍ଙ୍କ ମୁହଁ ଟିକେ ପଡ଼ି ଆସୁଥାଏ ।

ମୁଁ ପାରିଶ୍ରମିକ କିଛି ନିଏ ନାହିଁ ବାବୁ ! ଏ କଥା କ'ଣ ଆପଣ ଜାଣି ନାହାନ୍ତି ? ଯଦି କିଛି ଦେବାକୁ ଇଚ୍ଛା ହେଉଛି, ତାହାହେଲେ ଗାଁ ମୁଣ୍ଡରେ ଠାକୁରାଣୀଙ୍କ ମନ୍ଦିର । ସେଇ ମନ୍ଦିରଟି ମନ୍ଦିର ତିଆରିପାଇଁ କିଛି ଦେଇ ଯିବେ । ହଉ, ମୁଁ ଉଠୁଛି ।

ଶେଠ୍ଙ୍କ ଛାତିରେ ଲଦା ହୋଇଥିବା ବିରାଟ ପଥରଟାକୁ କିଏ ଯେପରି କାଉଁରି ବିଦ୍ୟାରେ ମଲ୍ଲୀ ଫୁଲଟାଏ କରିଦେଲା । ସେ ଭକ୍ତିରେ ଡୁବ୍ ହୋଇ ମାନା ପଣ୍ଡିତକୁ ନମସ୍କାର କଲେ ।

ମାନା ପଣ୍ଡିତ ଖାଲି ହସୁଥାଏ ।

---

ଶ୍ରୀ ଶାନ୍ତନୁକୁମାର ଆଚାର୍ଯ୍ୟ

# ଦୁର୍ବାର

ନାଃ, ତାକୁ ମାରିବାକୁଇ ହେବ । ଖୁବ୍ ଅଥୟ କଲଣି । ଖୁବ୍ ଦୁଃଖ ଦେଲଣି । ଖୁବ୍ ପରୀକ୍ଷା କଲଣି ଧୈର୍ଯ୍ୟର । ଏଥର ତାକୁ ମାରି ପକାଇବାକୁ ହବ ।

ମୁଁ ଟେବୁଲ୍ ପାଖକୁ ଧାଇଁଗଲି । ଗୋଟିଏ କାଗଜ ଭିଡ଼ି ଆଣି ଲେଖିବାକୁ ଆରମ୍ଭ କଲି—

To H. E. The Governor……

ସେଇଠି ମୁଁ ଟିକିଏ ଥଙ୍ଗେଇ ଗଲି । ମୋର ଅଙ୍ଗୁଳିଗୁଡ଼ିକ ମୋର କାନ୍ଧ ପଛରେ ଝୁଲୁଥିବା ତୂଣୀରଟି ଭିତରୁ ବ୍ରହ୍ମାସ୍ତ୍ରଟିକୁ ଅଣ୍ଡାଳି ଆଣୁ ଆଣୁ ଟିକିଏ ବିକ୍ଷିପ୍ତ ହୋଇଗଲେ । ମୁଁ ଟିକିଏ ଚିନ୍ତାରେ ପଡ଼ିଲି । ହଠାତ୍ ବ୍ରହ୍ମାସ୍ତ୍ର ! କିଏ ଟିକିଏ ମୁରୁକେଇ ହସିଲା ମୋ ପଛପଟେ । ବିରକ୍ତ ହେଲି । ଏଥି ମଧ୍ୟରେ ବ୍ରହ୍ମାସ୍ତ୍ରର ବ୍ରାହ୍ମ ମୁହୂର୍ତ୍ତଟି ବି ଛୁଟିଗଲା । ମୁଁ ମୋର ପୂର୍ବୋକ୍ତ ଧାଡ଼ିଟିକୁ କାଟିଦେଲି; କିନ୍ତୁ ମୁଁ ତ ପ୍ରତିଜ୍ଞାରହିତ ହୋଇ ନ ପାରେ ! ତା ପରେ ମୁଁ ପୁଣି ମନ୍ତ୍ର ଉଚ୍ଚାରଣ କରି ତୂଣୀରରେ ଅସ୍ତ୍ର ଠାବ କଲି—

To The Chief Minister……

ତା'ପରେ ଗୋଟିଏ ମୁହୂର୍ତ୍ତର କଥା ମୁଁ ସ୍ପଷ୍ଟ ଦେଖି ପାରିଲି—ସେଇ ମୁହୂର୍ତ୍ତ ଶେଷ ନ ହେଉଣୁ କି ପ୍ରଳୟ ଘଟିଯିବ । କପର ଘଡ଼ଘଡ଼ ରଡ଼କରି ମେଦିନୀ କମ୍ପାଇ ମୋର ମନ୍ତ୍ରିତ ଶର ସୃଷ୍ଟି କରିବ ଏକ ଖଣ୍ଡ ପ୍ରଳୟ ଏବଂ ଆଖି ପିଛୁଳାକ ମଧ୍ୟରେ କପର ସେ ଗ୍ରାସ କରିବ ଏଇ ମେଦିନୀରୁ ଏକଖଣ୍ଡ—ହୁଏତ ମୋର ପାଦତଳୁ ମଧ୍ୟ ! ଶତ୍ରୁ ଓ ତା ଲଗାଯାଇଥିବା ଆଉ କେତେ ହଜାର ଶତ୍ରୁଙ୍କୁ ଠେଲାଇ ନିର୍ମୂଳ କରି ଚାଲିଯିବ ସେ । ହୁଏତ ସେ ପ୍ରଳୟର ଫଳ ଭୋଗକରିବାପାଇଁ ମୁଁ ନିଜେ ବି ନ ଥାଇ ପାରେ । ଗୋଟିଏ ଲକ୍ଷ୍ୟ ହାସଲ କରିବାପାଇଁ ଏକ ଲକ୍ଷ୍ୟ ଲୋକଙ୍କୁ ଧ୍ୱଂସ କରାଯିବା ସାହସିକ କାର୍ଯ୍ୟନୁହେଁ କିମ୍ବା ବୁଦ୍ଧିମାନ୍ କାର୍ଯ୍ୟ ନୁହେଁ । ଗୋଟିଏ ବିଶଲ୍ୟକରଣୀପାଇଁ ସାରା ଗନ୍ଧମାର୍ଦନଟାକୁ ଟେକି ଆଣିବା ସମୟୋଚିତ ହୋଇପାରେ କିନ୍ତୁ ବୈଜ୍ଞାନିକ ଚିନ୍ତାର ପରିପ୍ରେକ୍ଷୀ ଏ ନୁହେଁ ।

ତା'ପରେ ଆସିଲା ସେଇ ଅବଶ୍ୟମ୍ଭାବୀ ମୁହୂର୍ତ୍ତଟି—କଟାକଟି ପୁଣି ଲେଖାଲେଖି ।

**To The Chief Minister** ସ୍ଥାନରେ ଆସିଲେ ବିଭାଗୀୟ ମନ୍ତ୍ରୀ । ସେ ଗଲେ, ଆସିଲେ ଧାଡ଼ି ଧାଡ଼ି, ପାହାଚ ପାହାଚ, ଥାକ ଥାକ ହୋଇ ବିଭାଗୀୟ ଉଚ୍ଚ ହାକିମଗଣ । ଏମିତି ହଜାରେ କଟାକଟି ଆଉ ଯୋଡ଼ାଯୋଡ଼ି ଭିତରେ ମୁଁ କେବଳ ତଳକୁଇ ଗଡ଼ିବାକୁ ଲାଗିଲି, ଯିତେ କି ସେ ଗଡ଼ିବାରେ ଅନ୍ତ ନ ଥିଲା । ପୁଣି ଦେଖିବାକୁ ଗଲେ ଥିଲା ବି । କାରଣ ଗଡ଼ିଗଡ଼ି ଯାଇ ମୁଁ ଯେଉଁଠି ଅଟକିଲି, ସେଠି ଯାହାକୁ ମୁଁ ଆବିଷ୍କାର କଲି ସେ ଆଉ କେହି ନୁହେଁ !—ସେ ହେଉଛି ସ୍ୱୟଂ "ମୁଁ" ! ତା ତଳକୁ ଆଉ ଗଡ଼ିବାକୁ ରାହା ନାହିଁ ।

ସେଇଠି ପହଞ୍ଚିସାରି ଯେତେବେଳେ ମୁଁ ମତେ ଆବିଷ୍କାର କରେ, ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି ଯେ କେମିତି ଗୋଟାଏ ରାଗରେ ମୁଁ ଥରୁଛି ।

ଏ ରାଗକୁ ନିଅଣ୍ଡରାଗ ବା inert anger ଛଡ଼ା ଆଉ କିଛି ଆଖ୍ୟା ମୁଁ ଦେଇ ପାରିଲି ନାହିଁ । ମୋର ସେଇ ଅବସ୍ଥାକୁ ମୁଁ ଯେତିକି ଯେତିକି ଅାବିଷ୍କାର କଲି, ସେତିକି ଆହୁରି ରାଗରେ ମୁଁ ଥରିବାକୁ ଲାଗିଲି ଖାଲି । କାରଣ ଥରିବା ଛଡ଼ା ଆଉ ମୋର କିଛି କରିବାର ନ ଥିଲା । ମୋର ସବୁ କିଛି ନିଷ୍କ୍ରିୟ ପାଲଟି ଯାଇଥିଲା । ମୋର ଧନୁ, ମୋର ତୂଣୀର, ମୋର ବାହୁ, ମୋର ରଥ, ଆଉ ସର୍ବୋପରି ମୋର ରଥଚାଳକ (ବିବେକ) ସବୁ କିଛି ଅଥଚ ଠିକ୍ ଥିଲେ; କିନ୍ତୁ ମୁଁ ନିଷ୍କ୍ରିୟ, ନିଃସହାୟ ଆଉ ଅବଶ । ଆଉ ଏ ଅବଶତା, ଏ କ୍ଲାନ୍ତିର ଶାନ୍ତି ନାହିଁ ସତେ ବା !

ମୁଁ ଯେ କେତେବେଳେ ସେଇଭଳି ନିର୍ବେଦ ହୋଇ ବସିରହିଛି । ସେତେବେଳକୁ ମୋର ରାଗ ଯଥେଷ୍ଟ କମି ଯାଇଥିଲା । ମୋ ଆଖିକୁ ଝକମକ କରି ଦଉଥିବା ଆଉ ମାରି ପକାଇବାର ନିଶା ଟିକିଏ ଗୁଡ଼ ଗୁଡ଼ ଯାଇଥିଲା । ସେଇ ଅପେକ୍ଷାକୃତ ସଫା ଆଉ ସ୍ଥିର ମୁହୂର୍ତ୍ତରେ ମୁଁ ମୋର ଚାରିଆଡ଼କୁ ଚାହିଁଲି । ଦେଖିଲି ମୋର ଚାରିପାଖଯାକ ଖାଲି ଗଦା ହୋଇଛି କାଗଜ—କଣ୍ଟାକଟି ଆଉ ଚିରୁକୁଟି କାଗଜ ! ତୂଣୀରରୁ ଶର ଖୋଜି ଖୋଜି ଶରମୂନର ଆଘାତରେ ମୋର ଅଙ୍ଗୁଳି ରକ୍ତାକ୍ତ ହେବା ଛଡ଼ା ଆଉ କିଛି ଅଗ୍ରଗତି ହୋଇନାହିଁ । ମୁଁ ଆଶ୍ଚର୍ଯ୍ୟ ହେଲି । ନିଜକୁ ନିଜେ ହସିଲି । ନିଜକୁ ନିଜେ ଆଶ୍ୱାସନା ଦେଲି, ଆଉ ଦୂରକୁ ଚାହିଁବାକୁ ଚେଷ୍ଟାକଲି । ମୋର ଆଖି ଧୀରେ ଧୀରେ ଦୂରକୁ ଦୂରକୁ—ଦିଗ୍‌ବଳୟ ଆଡ଼କୁ ବ୍ୟାପି-ବାକୁ ଆରମ୍ଭ କଲା, କିନ୍ତୁ ମୋର ଆଖିର ଏହି ଦିଗ୍‌ବଳୟଗତିର ସୁଯୋଗ ନେବାକୁ ସେ ଅର୍ଥାତ୍ ମୋର ଶରବ୍ୟ ପଛଘୁଞ୍ଚା ଆଦୌ ଦେଲାନାହିଁ । ମୁଁ ଦେଖିଲି ପଡ଼ିଲି, ଆଉ ଦେଖିଲି—ମୋ ଶରବ୍ୟ ଉଭେଇ ଗଲା ଗୋଟାଏ ଶ୍ୱେତ ବୃନ୍ଦାମୂଳେ, ଗୋଟିଏ ଶ୍ୱେତ ଗାତରେ । କେବଳ ଉଭେଇ ଗଲା ନାହିଁ ସେ—ଉଭେଇ ଯିବା ପୂର୍ବରୁ ମୁଣ୍ଡ ଟେକି ଟିକିଏ ସେ ମୋ ଆଡ଼କୁ ଚାହିଁଲା, ଆଉ ତା'ର ସେଇ ନିର୍ବିଷ ଦୃଷ୍ଟି କିନ୍ତୁ ଗଭୀର ହିଂସାତ୍ମକ ଦାନ୍ତ-

ଗୁଡ଼ିକୁ ଖୋଲିକରି ଖୁବ୍ ନିର୍ଦ୍ଦେଷଭାବେ; କିନ୍ତୁ ଟିକିଏ ଖଟେଇହବା ଭଳି ହସଟିଏ ନ ହସି ସେ ସତେ କି ତା'ର ଆଶ୍ରୟସ୍ଥଳ ସେଇ ଶ୍ରେଷ୍ଠ ଗାତଟି ଭିତରେ ପଶିଯାଇ ଆତ୍ମରକ୍ଷା କରିବାକୁ ମନା କଲାନି !

ସେ ଦୃଷ୍ଟିଗୋଚର ହେଉଥିବାଯାକେ ମୁଁ ଏକପ୍ରକାର ଧୈର୍ଯ୍ୟ ରକ୍ଷା କରି ପାରିଥିଲି । କାରଣ ମୁଁ ଜାଣିଥିଲି, ତାର ଜୀବନନାଟିକା ମୋ ହାତରେ ତଥାପି ଥିଲା; କିନ୍ତୁ ସେଠୁ ଅନ୍ତର୍ଦ୍ଧାନ ହୋଇଯିବା ପରେ ମୁଁ ଆହୁରି ଅସହାୟ ବୋଧ କଲି । ନିଷ୍ଫଳ କ୍ରୋଧ ଆହୁରି ଭୟଙ୍କରଭାବେ ଘାରିଲା ମତେ । ପୁଣି ମୁଣ୍ଡଟେକି ଉଠିଲା ମୋର ଭିତରର ପ୍ରବୃତ୍ତି—ମାରିବା ପ୍ରବୃତ୍ତି ଏବଂ ମୁଁ ଜାଣିଥିଲି ସେ ମୁହୂର୍ତ୍ତରେ ମାରିବା ବ୍ୟତୀତ ଆଉ କିଛି କର୍ତ୍ତବ୍ୟ ନ ଥିଲା ମୋର । ମୋର ରିଥଗୁଳିକ ପୁଣି ମତେ ଉପଦେଶ ଦେଲା—

"ମାର ! ମାରିପକା ! ମାରିବା ବ୍ୟତୀତ ଆଉ କିଛି କର୍ତ୍ତବ୍ୟ ନାହିଁ ତୋର ଏଇ ମୁହୂର୍ତ୍ତରେ !"

ମୁଁ ପୁଣି ଚିତ୍କାର କଲି—"ତାକୁ ମାର ! ତାକୁ ନିପାତ୍ କର ! ତାକୁ ନିପାତ୍ କରିବାକୁ ପଡ଼ିବ ! ଧ୍ୱଂସ କରିବାକୁ ପଡ଼ିବ ତାକୁ ! ସେ ମୋର ଅଶେଷ କ୍ଷତି କଲାଣି । କେବଳ ମୋର କାହିଁକି ? ମୋ ଜାତିର, ମୋ ଦେଶର ଅଶେଷ କ୍ଷତି କଲାଣି ସେ ! ଅସଂଖ୍ୟ ଫାଇଲ୍ କାଟି ନଷ୍ଟ କଲାଣି ସେ ! ଅସଂଖ୍ୟ ଚଉକିର ଗୃଳା ଖାଇ ଫମ୍ପା କରି ଦେଲାଣି ସେ ! ଅସଂଖ୍ୟ ଟେବୁଲର ଗୋଡ଼ କାଟି ଲେଙ୍ଗେଡ଼ା କରି ଦେଲାଣି ସେ ! ଅସଂଖ୍ୟ ଆଲମାରି କଣା କରି କନ୍‌ଫିଡେନ୍‌ସିଆଲ୍ କାଗଜପତ୍ର ନଷ୍ଟ କଲାଣି ସେ ! ଖାଲି ନଷ୍ଟ ତ କରେ ନା ସେ ! ସ୍ଥାନଚ୍ୟୁତ କରି, ଏଠାକାର ଜିନିଷ ସେଠି ଆଉ ସେଠାକାର ଜିନିଷକୁ ଏଠି, ଏଠାକାର କାଗଜ ସେଠି

ଆଉ ସେଠାକାର କାଗଜ ଏଠି, ଏ ମୁଣ୍ଡର ଜଣ୍ଟା ସେ ମୁଣ୍ଡରେ, ଆଉ ସେ ମୁଣ୍ଡର ଜଣ୍ଟା ଏ ମୁଣ୍ଡରେ ଥୋଇ ପ୍ରଳୟ ସାଧି ପାରେ ସେ ! ନାଇଁ, ନାଇଁ ତାକୁ ମାରିବାକୁ ହବ । ତାକୁ ମାରି ତା'ର ବଂଶ ନିପାତ କରିଦେବାକୁ ହିଁ ହବ !"

ମୋ ଭିତରେ ପୁଣି ନିଆଁ ଜଳି ଉଠିଲା ଦପ୍ କରି । ପୁଣି ବଡ଼ାଏ କାଗଜ ଓଟାରି ଆଣି ମୁଁ ଲେଖିବାକୁ ଲଗିଲି—ପୁଣି ସେଇ ମୂଳରୁ—

To H. E. The Governor—

ମୁଁ ପୁଣି ତୃଣୀର ଅଣ୍ଡାଳି ବସିଲି । ଗୋଟି ଗୋଟି ହେଇ ସବୁ ଶରର ମନ୍ତ୍ର ମୋ ଜିଭ ଆଗକୁ ଆପଣା ଛୁଏଁ ଗୁଳି ଆସୁଥିଲେ । ମୋର କାନରେ ସବୁକଥା ପଡ଼ୁଥିଲା ଗୋଟି ଗୋଟି ହେଇ—ତା ବିରୁଦ୍ଧରେ ହଜାରେ ଅଭିଯୋଗ—

ବଡ଼ ପୁଅର ନୂଆ ପେଣ୍ଟରେ କଣା କରିଚି ସେ !

ମଝିଆଁ ପୁଅର ରବରପେଣ୍ଡୁକୁ କଣାକରି ପକେଇ ତହିଁରୁ ହାଉଆ ନିକାଳିଚି ସେ !

ସାନ ଝିଅର 'କୋଧା ଭାଲୁ'ର ପେଟ ଫୁଟେଇ ତା ପେଟରୁ ନଡ଼ାତକ କାଢ଼ି ପକେଇଚି ସେ !

ମୋ ସ୍ତ୍ରୀଙ୍କ ନକଲି ସିଲ୍କ କେଟକେରିକୁ କାଟି ନେଇ ତା ଛୁଆଙ୍କ ପେଇଁ ଶେଯ କରିବା ଉଦ୍ଦେଶ୍ୟରେ ସେତକକୁ ଗାତରେ ପୂରେଇଚି ସେ !

ମୋ ବାହାଘରର ବେଳର ଛଅଟି ଗୋଛକୁ କାଟିକୁଟି ତହିଁରୁ ଫର୍ଦ୍ଦେ ଫର୍ଦ୍ଦେ ନେଇ ପଡ଼ୋଶୀ ଘରର ଘରଣୀଙ୍କର ପରିବା ଡ଼ାବଲରେ ଆଉ ହାରମୋନିୟମ ଡ଼ାବଲରେ ପୂରେଇଚି ସେ !

ସେଗୁଡ଼ାକ ଯେତିକ ଯେତିକ ମନେପଡ଼ୁଥିଲା, ମୋର ଧୈର୍ଯ୍ୟର ବନ୍ଧ ସେତିକ ସେତିକ ଭାଙ୍ଗି ପଡ଼ୁଥିଲା । ମୁଁ ଫନ୍ଦି ଫନ୍ଦି କରି କେତେ ଯେ ଗାଳି ପକେଇଥିଲି ତା'ର ଠିକଣା ନ ଥିଲା । ଗୋଟାଏ ନିଃଶ୍ୱାସରେ ମୁଁ ଲେଖି ଗ୍ଲୁଲିଥିଲି ସେଇ ଘର୍ଘ ଦରଖାସ୍ତଟି ! ଶବ୍ଦ ଶବ୍ଦ ଭାବପ୍ରବଣ, ଉତ୍ତେଜନାମୟ ଗରମାଗରମ ଶବ୍ଦସଞ୍ଜୋଜିତ ଦରଖାସ୍ତ ! ମୁଁ ଜାଣିଥିଲି ଏଥର ଆଉ ତା'ର ନିସ୍ତାର ନ ଥିଲା । ସେ ବ୍ରହ୍ମାସ୍ତ୍ରଇ ଗୃହେଁ ! ତାକୁ ସେଇ ଅସ୍ତ୍ରରେଇ ନିପାତ୍ କରାଯିବ ! ହେଉ ପଛେ ପ୍ରଳୟ !

ଆଉ ଟିକକେ ମୁଁ ତାକୁ ଶେଷ କରିଥାନ୍ତି, ଆଉ ଘଇକରି ପେଶି ଦେଇଥାନ୍ତି ସେଇ ମହା ଭୟଙ୍କର ଅସ୍ତ୍ରଟିକୁ ! କିନ୍ତୁ ଠିକ୍ ସେତିକବେଳେ ହଠାତ୍ ଗୋଟିଏ ସୂକ୍ଷ୍ମ ଶବ୍ଦ ମୋର କର୍ଣ୍ଣଗୋଚର ହେଲା । ଶବ୍ଦଟି ଯେତେ ସୂକ୍ଷ୍ମ ହେଲେ ବି ସେ ମୋ କାନ ପରଦାକୁ ଅଥୟ ନ କରି ରହି ପାରିଲା ନାହିଁ ।

ଚମକି ପଡ଼ି ମୁଁ ଠିଆ ହେଇ ପଡ଼ିଲି । ହଠାତ୍ ମୁଁ ଦେଖିଲି—ମୋ ବ୍ରହ୍ମାସ୍ତ୍ର ପ୍ରମାସ୍ତ୍ରକୁ ଖାତିର୍ ନ କରି ସେ ଢ଼ିଆଁ ଟାଏ ମାରିଲା ଠିକ୍ ମୋ ଚଉକିତଳକୁ ! ଏତେବେଳଯାଏ ଯାହାକୁ ମୁଁ ଲକ୍ଷ୍ୟ କରି ଶର ମନ୍ତ୍ରଣ କରୁଥିଲି, ସେ ଯେ ମୋର ଚଉକିର ଗଦିଭିତରେ ପଶି ଠୁକୁଠୁକୁ କରି ମୋର "ଡ଼ନ୍‌ଲପ୍ ପିଲୋ'ର ଆସନକୁ କାଟୁଥିଲା !"

ମତେ ଠିଆ ହେଇ, ତା'ର ସମ୍ମୁଖୀନ ହେବାର ଦେଖି ସେ ଗୋଟାଏ ମୁହୂର୍ତ୍ତପାଇଁ ଟିକିଏ ହଡ଼ବଡ଼େଇ ଗଲାଭଳି ଦେଖେଇ ହେଲା; କିନ୍ତୁ ସେଇ ଗୋଟାଏ ମୁହୂର୍ତ୍ତରେ ସବୁ କିଛି ବଦଳିଗଲା । ତା'ପରେ ମୁଁ ଦେଖିଲି ମୁଁ ଖାଲି ଧନୁଶର ଧରି ଗୋଡ଼େଇଛି ତା'ର ପଛେ ପଛେ, ଆଉ

ସେ ତା'ର ବ୍ୟୂହ ପରେ ବ୍ୟୂହ ରଚନାକରି ନିଜକୁ ରକ୍ଷା କରୁଚି ! କେବଳ ଆତ୍ମରକ୍ଷା ସେ କରୁନାହିଁ, କ୍ରମାଗତ ଆକ୍ରମଣ ମଧ୍ୟ ସେ ଚଳେଇଥାଏ ମୋ ଉପରେ, ତା'ର 'ଗରିଲା ଘାଟୀ'ମାନଙ୍କ ମଧ୍ୟରୁ ।

ପ୍ରଥମେ ସେ ଗଳେଇ ପକେଇଲା ଗୋଟାଏ ମୂଲ୍ୟବାନ୍ ଚିଠି ପତ୍ର ମୋ ଟେବୁଲ ଉପରୁ । ତା'ପରେ ଏକା ଡ଼ିଆଁକେ ପଶିଗଲା ମୋର ବହି-କେଶ୍ ଭିତରେ । ମୁଁ ରାଗରେ ବହିପତ୍ର ଖେଳେଇ ପକେଇଲି । ଦି' ଖଣ୍ଡ ଅଠା ଯୋଡ଼େଇ ପକେଟ୍‌ବୁକ୍ ଖସ୍ ଖାସ୍ ଖସି ପଡ଼ିଲେ ତଳକୁ । ଦେଖୁ ଦେଖୁ ପଙ୍ଖାପବନରେ ସେମାନଙ୍କର ପତ୍ର ସବୁ ଘରସାରା ଉଡ଼ି ବୁଲିଲେ । ବ୍ୟସ୍ତ ହୋଇ ସେମାନଙ୍କୁ ମୁଁ ଏକତ୍ର କରୁଥିବାର ସୁଯୋଗ ନେଇ ସେ ଡ଼ିଆଁ ଟାଏ ମାଇଲା ଓ କାନ୍ଥ-କଣରେ ଗୋଟିଏ ଟୁଲ ଉପରେ ଯତ୍ନରେ ରଖାଯାଇଥିବା ମୋର ପ୍ରିୟ ଗୋଟିଏ ମୃଣ୍ମୟ ବୁଦ୍ଧ ମୂର୍ତ୍ତିକୁ ତଳକୁ ଗଳେଇ ପକେଇଲା । ମୋର ଆଖି ଆଗରେ ସେ ଏଡ଼େ ସୁନ୍ଦର ବୁଦ୍ଧଟିକୁ ବିଗାଡ଼ି କରି ଥୋଇଦେଲା । ସେତେବେଳକୁ ମୋ ପିତ୍ତ ମୋ ତାଳୁର କେଉଁଠି ପହଞ୍ଚିଲା ମୁଁ ଜାଣେ ନା । ମୁଁ ଅନ୍ଧ ହୋଇ ତା' ପିଚ୍ଛା ଧାଇଁଥିଲି ଓ ସେ ଗୋଟିକ ପରେ ଗୋଟିଏ ଡ୍ରଇଁରୁମ୍‌ର ସମସ୍ତ ଭଙ୍ଗପ୍ରବଣ ଜିନିଷ ଆଡ଼କୁ କୁଦା ମାରିବାକୁ ଲାଗିଲା । ଅବଶେଷରେ ସେ ଡ଼ିଆଁ ଟାଏ ମାଇଲା ଓ ଆଖି ପିଛୁଳାକ ମଧ୍ୟରେ ସେ ଯାଇ ପଶିଗଲା ମୋ ଡ୍ରଇଁରୁମ୍‌ର ଏକାନ୍ତ କୋଣରେ ଆଦରରେ ସାଇତା ହୋଇଥିବା ସେ ବନ୍ଧୁ ସ୍ମୃତିବିଜଡ଼ିତ ମୋର ଆଦରର ମାର୍ବଲ-ନିର୍ମିତ ତାଜ୍‌ମହଲ ମୂର୍ତ୍ତିର ପଛପଟେ ।

ମୋ ଆଖି ଖୋସି ହୋଇ ପଡ଼ିଲା । ମୋର ବିବେକର ଶତ ତାଡ଼ନା ସତ୍ତ୍ୱେ ମୁଁ ମୋର ଧନୁଶର ଉଠାଇ ପାରିଲି ନାହିଁ ତା' ଉପରକୁ । ମୁଁ କିଙ୍କର୍ତ୍ତବ୍ୟ ହୋଇ ଠିଆ ହେଇଗଲି ।

ତା'ପରେ ମୁଁ ଯେତେବେଳେ ଆଖି ଖୋଲେ, ମୁଁ ଦେଖେ ତାକୁ —ଠିକଏ ଆଗରୁ ଯିଏ ମତେ ଡରି, ମୋ ଶର ସଯୋଜନାରେ ଖିନ୍ତ ହୋଇ ଓ ମୋର ଦୂରବଳୟ ଦୃଷ୍ଟିର ଫାଇଦା ଉଠେଇ, ବୃଦାମୂଳେ ଛପିଯାଇଥିଲା, ସେ ବର୍ତ୍ତମାନ ବଦ୍ରୂପ ଚକ୍ଷୁରେ ଅନେଇ ରହିଛି ମୋତେ, ମୋର ବହୁମୂଲ୍ୟ ତାଜମହଲର ପଛପଟୁ ।

ମୋର ଧନୁ ଆଉ ଶର ଆଗରୁ ନଇଁ ପଡ଼ିଥିଲେ । ସେଇ ମୁହୂର୍ତ୍ତରେ ମୋର ମୁଣ୍ଡଟି ବ ନଇଁ ପଡ଼ିଲା । ମୁଁ ତାର ପୂଜା କଲି । ମୁଁ ତା'ର ଗୁଣ କୀର୍ତ୍ତନ କଲି । ଶ୍ଲୋକ ଉଦ୍ଧାର କଲି ଆଉ ଶାସ୍ତ୍ର ଓ ସଂସ୍କାର ଉପରେ ସମସ୍ତ ଅବିଶ୍ୱାସ ସତ୍ତ୍ୱେ ମୁଁ ତାକୁ ପୂଜାକଲି । ଏତେ କଷ୍ଟ କରି ତା ସଙ୍ଗେ ଏଇ ଖଣ୍ଡଯୁଦ୍ଧ କଲି; କିନ୍ତୁ ଲଭ କ'ଣ ହେଲା ? ମୁଁ ଯୁଦ୍ଧ ଶେଷ କରିପାରିଲି ନାହିଁ । ସେ ତା'ର ଅବସ୍ଥାନ ବଜାୟ ରଖିଲା । ମୁଁ ଉପାସନା କଲି—

ଧନ୍ୟ ତୁମେ ଗଣେଶବାହନ ! ତୁମର ପ୍ରଭୁ ବୁଦ୍ଧି ଆଉ ଜ୍ଞାନ-ବଳରେ ପୃଥିବୀ ଜୟ କରନ୍ତି, ଆଉ ତୁମେ ମଧ୍ୟ ପୃଥିବୀ ଜୟ କରିଛ । ଧନ୍ୟ ଧୂର୍ତ୍ତ । ଜ୍ଞାନର ବାହନଇ ତୁମେ ଏକା ।

ଠିକ୍ ସେତିକବେଳେ, ମୁଁ ଯେତେବେଳେ ମୁଣ୍ଡ ନଡ଼କେଇ ସେଠି ଠିଆ ହୋଇଥିଲି, ସେତେବେଳେ ହଠାତ୍ ବାହାରେ ଗୋଟାଏ କ'ଣ ଭୀଷଣ ଗୋଳମାଳ ଶୁଣି ମୁଁ ଝରକା ପାଖକୁ ଧାଇଁଗଲି । ଦେଖିଲି ଗୁଡ଼ାଏ ଟୋକା ଧାଡ଼ବାନ୍ଧି ରାସ୍ତାକଡ଼ରେ ଚାଲିଛନ୍ତି, ଆଉ ରଡ଼ି ଛାଡ଼ୁଛନ୍ତି । ବଡ଼ ବୀପର୍ଯ୍ୟସ୍ତ ସେ ଚିତ୍କାର; ତଥାପି ତା ଭିତରୁ କିଛି ଗୋଟାଏ ଜିନିଷ ମୋ କାନକୁ ଆକର୍ଷଣ କଲା । କାନ ଡେରି ଶୁଣିଲି—ସେମାନେ ଚିତ୍କାର କରୁଛନ୍ତି—

"ଇନ୍‌କିଲାପ୍—ଜିନ୍ଦାବାଦ"

× × ×

ତା'ପରେ କଏ ଗୋଟାଏ ସେଇ ଇନ୍‌କଲାପ୍‌ର ଉପକ୍ରମଣିକା ଭିତରୁ ରଢ଼ ଦେଲା—ପ୍ରଥମେ କଥାଟା ଖୁବ୍ ଅବାନ୍ତର ଆଉ ଖାପଛଡ଼ା ଶୁଭିଲା—ମତେ ହସ ଲାଗିଲା । ପିଲାଙ୍କର ଡାକ ମତେ ବି ଥୋଡ଼ାଏ ଉତ୍ସାହ ଦେଲା । ସେମାନେ କୁହାଟ ମାରୁଥିଲେ—

ଲ୍‌ଞ୍ଚୁଆଙ୍କୁ—ଯୋତାମାର !

ମିଛୁଆଙ୍କୁ—ଇଲେକ୍‌ଟ୍ରିକ୍ ଚଉକରେ ବସାଅ ।

ଚୁଗୁଲିଆଙ୍କୁ—ପିନ୍‌ରେ ଖେଞ୍ଚ ।

ଖଚୁଆ, କାନକୁହାଙ୍କୁ—ଠେକାମାର ।

ଧପ୍‌ପାବାଜ୍‌ଙ୍କୁ—ସଙ୍ଗୀନ୍ ମୁନରେ କୁତକୁତ୍ କର !

ଅଳସୁଆଙ୍କୁ—ବିଛୁଆଁଭିତରେ ସଲସଲକର !

ଦେଶଦ୍ରୋହୀଙ୍କୁ—ଯାହା କରିବାର କର ।

× × ×

ଦାଣ୍ଡରେ ସେତେବେଳେ କଅଣ ଘଟୁଥିଲା ମୁଁ କିଛି ଅନ୍ଦାଜ କରିପାରୁ ନ ଥିଲି । ପ୍ରସେସନ୍ ଚାଲିଥିଲା; କିନ୍ତୁ ଘଟଣାଟା କଅଣ ମୁଁ କିଛି ବୁଝିପାରୁ ନ ଥିଲି । ହଠାତ୍ ମୋର ସବୁ ଦାର୍ଶନିକପଣିଆ ଭାଙ୍ଗିଗଲା । ସେଇ ପ୍ରସେସନ୍ ଭିତରେ କଲେଜପଢ଼ୁଆ ମୋ ପୁଅଟାକୁ ଦେଖିପକେଇ ମୋ ଛାତିରେ ଛନକା ପଶିଗଲା । ହଠାତ୍ ଗୋଟାଏ ଆଦିମ ରକ୍ଷଣଶୀଳ ପ୍ରବୃତ୍ତି ମୁଣ୍ଡ ଟେକ ଉଠିଲା ମୋ ଭିତରେ ।

"ଧୀର ! ଧୀର !" ମୁଁ ଡାକ ଛାଡ଼ିଲି । ତା ନାଁ ଧରି ।

ମୋ ଛାତି ଦାଉଁ ଦାଉଁ ପଡ଼ିଲା । ଏ କ'ଣ ? ଏ ଟୋକା କ'ଣ ମାଡ଼ିଲାଣି ? ଏ କି ପ୍ରସେସନ୍ ? ମୋର ଭୟ ହେଲା । ଟୋକାଟାର ଭବିଷ୍ୟତ ତ଼ଳ ତ଼ଳ ହେଲା ମୋ ଆଖିରେ । କାଲେ ଗାରଟାଏ କଏ ପକେଇଦେବ ସେଇ ଚକ୍ ଚକ୍ ହେଇ, ଦାଉ ଦାଉ ଜଳୁଥିବା ଭବିଷ୍ୟତର ରେକର୍ଡ ଉପରେ ! ମୁଁ ପୁଣି ପାଟି କରି ଉଠିଲି—

"ହେ ଧୀର ! ଧୀର !"

କିନ୍ତୁ ମୋର ସବୁ ଡାକ ବୃଥା ହେଲା । ଧୀର ମୋ ଡାକ ଶୁଣିଲା ନାହିଁ । ପ୍ରସେସନ୍ ଚାଲିଗଲା । ମୁଁ ବୁଝିଲି ଯୁଗ କେମିତି ଆଗେଇଗଲା ଆଉ ପାଦେ ! ମୁଁ ଆଉ ମୋ ପୁଅ—କେତେ ଭିନ୍ନ ! ଆମେ ରାଗୁଥିଲୁ; କିନ୍ତୁ ମାରିପାରୁ ନ ଥିଲୁ—ହଜାରେ ମାରିବାର ଇଚ୍ଛାସତ୍ତ୍ୱେ ! ଆହା ବି କହିପାରୁ ନ ଥିଲୁ ଆମେ; କିନ୍ତୁ ଆଜି ଧୀର, ମୋ ପୁଅ ଏ କ'ଣ ହେଲା ? କାହାକୁ ମାରିବାପାଇଁ ଏ ଧାଇଁଛି ଏମିତି ପାଗଳଙ୍କଭଳି ବର୍ବରସ୍ୱରରେ ? ସେ କ'ଣ ମାରିପାରିବ ? ତା ହାତ ଉଠିବ ?

ମୁଁ ଗୁମ୍‌ମାରି ବସିପଡ଼ିଲି । ସନ୍ଧ୍ୟାବେଳକୁ ଟୋକାଟା ଫେରି-ଆସିଲା । ତା ଆଖିରେ କ୍ଳାନ୍ତି ତଥାପି ଅତୃପ୍ତ । ମୁଁ ନ ପଚାରିବା ପୂର୍ବରୁ ହସି ହସି ଖାରଦର୍ପରେ ସେ କହିଲା—

"ଆଜି ଆମେ ସିଧା ଗଲୁ ମନ୍ତ୍ରୀଙ୍କ କୋଠିକୁ !"

"ମନ୍ତ୍ରୀଙ୍କ କୋଠିକୁ ?"

"ହଁ, ସିଧା ମନ୍ତ୍ରୀଙ୍କ କୋଠିକୁ ! ଆଉ ମନ୍ତ୍ରୀ ଯଦି ନ ଶୁଣନ୍ତି ତା ହେଲେ ତା ଉପରକୁ ବି ଯିବାକୁ ତିଆରି ଅଛୁ ଆମେ—ଆମର ଯୁବକସଙ୍ଘ ।"

"କିନ୍ତୁ, କାହିଁକି ?" ମୁଁ ଆଶ୍ଚର୍ଯ୍ୟ ହେଇ ତା ମୁହଁକୁ ଅନେଇଲି ଆଉ କହିଲି, "ଏତେ ଶୀଘ୍ର ବ୍ରହ୍ମାସ୍ତ୍ର କାହିଁକି ଆଉ କାହାପାଇଁରେ ବାପା ?" ମୁଁ ଥାଥାମାମା ହେଇଗଲି ।

"କାହାପାଇଁ ?" ଫୋକାଟା କଟମଟ କରି ମତେ ଅନେଇଲା—ସତେ କି ସେ ମୋରି ଭିତରେ ଦେଖୁଥିଲା ପ୍ରକୃତ ଦୋଷୀକୁ ! ତା'ପରେ ସେ ରୂମ୍ଭିକରେ କହିଦେଲା, କାହାଁକି ? କାହାଁ ସେଇ କଗାଣୀପାଇଁକି—ଯିଏ ଆମ ପିଲାଙ୍କଠୁ ଆଡ଼ମିସନ୍‌ବେଳେ ଦଶଟଙ୍କା କଲାପୋତେଇ ନିଏ—ଆମ ଦରଖାସ୍ତକୁ ସବୁ ଏକଡ଼ ସେକଡ଼ କରେ—ଆମ ଡ୍ରାମା ଆଉ ଖେଳଫଣ୍ଡ୍ ଟଙ୍କାକୁ ପାଟିରେ ପକେଇ ଦେଇ ଆମରି ଆଖି ଆଗରେ ଜିଭ ବୁଲେଇ ବୁଲେଇ ଆମକୁ ଖତେଇ ହୁଏ······"

"ଏତିକ ଟିକିଏ କଥାପାଇଁ ତୁମେ ମନ୍ତ୍ରୀଙ୍କ ପାଖକୁ ଚାଲିଗଲ ? କିନ୍ତୁ, ତୁମେ କ'ଣ ତୁମ ଶରବ୍ୟକୁ ସାଧନ କରିପାରିଲ ? ଏତେ ବଡ଼ ବାଣ ବୃଥା ନଷ୍ଟ ହେଲା ନା ତ। ମୁଁ ସକାଳର ଭାଙ୍ଗି ଯାଇଥିବା ବୁଦ୍ଧମୂର୍ତ୍ତିର ମୁଣ୍ଡଟାକୁ ଗଣ୍ଡି ସହିତ ଏକାଠି ଯୋଡ଼ିବାର ବୃଥା ପ୍ରୟାସ କରୁଥିଲି।

ଫୋକାଟାର ନଜର ସେ ବୁଦ୍ଧମୂର୍ତ୍ତି ଆଡ଼କୁ ନ ଥିଲା। ସେ କ'ଣ ଗୁଡ଼ାଏ ପ୍ରଳାପ କଲା। ମୁଁ ଭାବିଲି ବୋଧହୁଏ ମୋର ସେଇ ମୁଣ୍ଡହୀନ ବୁଦ୍ଧ-ମୂର୍ତ୍ତିଟା ତାକୁ କାବୁ କରିନେଲା ବୋଲି; କିନ୍ତୁ ମୋର ଧାରଣା ବୃଥା। ସେ ଥିଲା ଆଉ ଏକ ଯୁଗର କଥା। ଆମ ଯୁଗ ସେତେବେଳକୁ ଯାଇଥିଲା-ଘରି ବହୁତ ତଳକୁ।

ହଠାତ୍ ମୋ ହାତରେ ସେଇ ମୂର୍ତ୍ତିଟାକୁ ଦେଖି ପକେଇ ସେ ଏତେଦୂର ବିସ୍ମିତ ହେଲା ଯେ ତା'ର ପ୍ରଳାପ ସବୁ ଏକାଥରକେ ବନ୍ଦ ହୋଇଗଲା। ତା'ର ପ୍ରିୟ ବୁଦ୍ଧମୂର୍ତ୍ତିଟିକୁ ଏପରି ଅବସ୍ଥାରେ ଦେଖି ପକେଇ ସେ ଗୋଟାଏ ମୁହୂର୍ତ୍ତପାଇଁ ମୂକ ହୋଇଗଲା। ମୁଁ ଭାବୁଥିଲି—ଏ ଯୁଗର ଶକ୍ତି ବୋଧହୁଏ ଏତିକି—ଯେତିକି ଆମର ଥିଲା !

କିନ୍ତୁ ହଠାତ୍ ତା'ର ଆଖି ଦପ୍ ଦପ୍ ଜଳି ଉଠିଲା।

"ଯ୍ୟାକୁ ଏମିତ୍ତ କଲ୍ କଏ ବାପା ! ରୁଷ୍ଟଭାବେ ସେ ଚାହିଁଲା ମତେ ।

"ମୂଷା"—ମୁଁ ଉତ୍ତର ଦେଲି—ଚୁମ୍ବକରେ ।

"ମୂଷା !" ସେ କଟମଟ କରି ମତେ ଚାହିଁଲା ।

"ହଁ, ଗୋଟାଏ ଚୂଟିଆ ମୂଷା !" ମୁଁ ତା ମୁହଁକୁ ନ ଚାହିଁ ଉତ୍ତର ଦେଲି ଓ ମନେ ମନେ ମୋର ସକାଳର ନିଷ୍କ୍ରିୟ ଉତ୍ତେଜନା ସହିତ ତା'ର ସେହି ଡମଡମ ମୁହଁକୁ ମିଶେଇ ଦେଖୁ ଦେଖୁ ହସୁଥିଲି ।

ମୁଁ ଭାବିଥିଲି ସେ ବୋଧହୁଏ ଚୁପ୍ ରହିଯିବ; କିନ୍ତୁ ନା । ମୋର ଆଖି ଖୋସି ହୋଇ ପଡ଼ିଲା—ଯେତେବେଳେ ସେ ଠୋକା ବିଜୁଳି ଭଳି ଚମକି ଗଲା ଡ୍ରଇଂରୁମ୍ ଆଡ଼କୁ ।

ଆଚ୍ଛା ! ମୁଁ ଦେଖୁଛି—ସେ ପାଜିଟା—

ଯ୍ୟାର ଫଳାଫଳ କ'ଣ ହବ ଆମେ ଠିକ୍ ଜାଣିଥିଲୁ । ଖାଲି ଜିନିଷ ଭାଙ୍ଗିବାର ସାର ହବ ଜାଣି ମୁଁ ଆଉ ତା' 'ମା' ଦହିଁକା ଦହେଁ ହାଁ:-ହାଁ କରି ତାକୁ ସେଥିରୁ ନିବର୍ତ୍ତାଇବାକୁ ଦଉଡ଼ିଲୁ ତା' ପଛେ ପଛେ, କିନ୍ତୁ ଆମର ସବୁ ହାଁ ହାଁ ବୃଥା ।

ପ୍ରଥମେ ସେ ଧାଇଁ ଯାଇ କପ୍-ବୋର୍ଡ଼ ଭିତରର ସବୁ ବହିଗୁଡ଼ାକ ଖେଳେଇ ପକେଇଲା । ଦ' ଚାରିଟା ବହିଲେଇ ବହି ତଳେ ପଡ଼ି ତାଙ୍କ ମଲାଟର କଣ ସବୁ ବଙ୍କା ହୋଇଗଲା ।

ଫକ୍ କରି ସେଇ ବହି ସନ୍ଧିରୁ ଡ଼ିଆଁ ଟାଏ ମାଇଲା ସେ ମୂଷା । ଡ଼ିଆଁ ଟାଏ ମାରି ସେ ଯାଇ ପଶିଲା ଗୋଟାଏ ଟେବୁଲ୍ ଲ୍ୟାମ୍ପ ପଛ କଡ଼େ ।

ହାଁ ହାଁ । କରୁ କରୁ ସେ ବାପୁ। ଠୋକାଠା ମୂଷାକୁ ହୁରୁଡ଼େଇ ଦେଲା ସେଠୁ ।
ମୂଷାଠା ସେଠୁ ବାହାର ଯାଇ ପଶିଲା ମୋ ପେନ୍‌ଷ୍ଟାଣ୍ଡ ପଛ ପଟେ; କିନ୍ତୁ
ଗଲାବେଳେ ଟେବୁଲ୍ ଲ୍ୟାମ୍ପଟାକୁ ଓଲଟେଇ ନ ଦେଇ ସେ ଗଲାନାହିଁ ।
ଗୃହୁଁ ଗୃହୁଁ ଲ୍ୟାମ୍ପଟା ତଳେ ପଡ଼ି ଚେପା ହୋଇଗଲା । ଆଉ ତା'ର
ଇଲେକ୍‌ଟ୍ରିକ୍ ବଲ୍ ଠୋକର ଫାଟି ଚୂନା ହୋଇଗଲା; କିନ୍ତୁ ଠୋକାଠା
ନଗ୍ରେଡ଼ବନ୍ଧା । ସେ ମୂଷାକୁ ପୁଣି ଚଡ଼ୋଉ କଲା । ମୂଷା ସେଠୁ ବାହାର
ପଶିଗଲା ଷ୍ଟାଣ୍ଡ୍‌ରେ ରହୁଥିବା ଗୋଟାଏ ଗାନ୍ଧି ଫଟୋର ପଛଆଡ଼େ । ସେଠି
ମଧ ତାକୁ ଆଶ୍ରୟ ମିଳିଲାନାହିଁ । ଫଟୋଟା ଓଲଟି ପଡ଼ି, ତଳେ ପଡ଼ି
ତା'ର କାଚ ଛିନ୍‌ଛନ ହୋଇଗଲା । ସେଠୁ ଡେଇଁ ସେ ପଶିଗଲା ଠିକ୍
ସେଇ ଜେଗାରେ, ଯୋଉ ଜେଗାରେ ରହି ସେ ମତେ ସକାଳେ ଉଙ୍କି
ମାରୁଥିଲା । ମାର୍ବଲର ତାଜମହଲ ମୂର୍ତ୍ତିଟା ଟଳମଳ ହୋଇଗଲା ।

ମୁଁ ରାଗରେ ଅସ୍ଥିର ହୋଇ ରଡ଼ି ଗୁଡ଼ିଲି—

"ହେ ! ହେ ! ତୁ ଏ କ'ଣ କରୁଚୁ ଧୀର ! କ'ଣ ଗୋଟାଏ
ମୂଷାପେଇଁ ତୁ ମୋର ସର୍ବନାଶ କରିଦେବୁ ?"

କିନ୍ତୁ ମୋର କଥା କିଛି ତା' କାନରେ ପଶିଲା ନାହିଁ । ସତେ
କି ସେ ପାଗଳ ହେଇ ଯାଇଥିଲା । ଗୋଟିଏ ମୂଷାପେଇଁ ଜୀବନପଣ ସେ
କରିଥିଲା ।

ମାର୍ବଲର ତାଜମହଲ ତଳେ ପଡ଼ି ଛିନ୍ ଛନ ହୋଇଗଲା । ମୂଷାଟା
ଆଉ କେଉଁଠି ଥାନ ନ ପାଇ ମୋ ଆଡ଼କୁ ଛୁଟି ଆସିଲା, କିନ୍ତୁ ମୋ
ପାଖକୁ ଆସୁ ଆସୁ ସେ ଚଟ୍‌କିନି ବୁଲିଗଲା ଓ ଆଖି ପିଛୁଡ଼ାକ ମଧ୍ୟରେ
ଯାଇ ଧୀରର ମାଆର ଗୋଡ଼ତଳେ ଲେଟିଥିବା ଶାଢ଼ୀଭିତରେ ଆଶ୍ରୟ
ନେଲା ।

ଧୀରର ଦ୍ୱିତୀୟ ମାଡ଼ରେ ମୂଷାଟା ଛଟ୍‌କରି ଓଲଟି ପଡ଼ିଲା; କିନ୍ତୁ ତା'ର ପ୍ରଥମ ମାଡ଼ ବସିଥିଲା ତା' ମାଆର ଗୋଡ଼ରେ । କାହାର ଗୋଡ଼ତଳେ କିବା କାହାର ପଣତତଳେ ସତେ କି ଏ ଯୁଗର ମୂଷାର ଆଶ୍ରା ନ ଥିଲା !

ଧୀର ଧଇଁସଇଁ ହୋଇ ବସି ପଡ଼ିଲା । ଠିକଏ ଦୂରରେ ତା'ର ଶତ୍ରୁ (ଓ ମୋର ଶତ୍ରୁ ମଧ୍ୟ) ରକ୍ତାକ୍ତ ହୋଇ ତଳେ ଲୋଟୁଥିଲା । ଘରର ଚତୁର୍ଦ୍ଦିଗ ଭଙ୍ଗା କାଚ, ମାର୍ବଲ ଆଉ ବହିର ପୃଷ୍ଠାରେ ଭରପୂର ହୋଇଥିଲା । ଧୀର କିନ୍ତୁ ଏକ ଆଖିରେ ଚାହିଁ ଥିଲା ସେଇ ମଲା ମୂଷାଟାକୁ ।

---

ଶ୍ରୀ ହରିହର ଦାସ

# ମାଷ୍ଟର ମିଆଁ

## —ଏକ—

ମାଷ୍ଟର ମିଆଁ ଟେଲରିଂ ସପ୍ ।

ମିଆଁ ସାହାବ ନାଁରେ ମାଷ୍ଟର ମିଆଁ ପ୍ରଖ୍ୟାତ । ବେଶ୍ ଖାତିର ତା' ପ୍ରତି । ତା'ଭଳି କଟିଙ୍ଗ୍ କଲ୍‌ବାଲ୍ ଆଉ ସାରା ସହର ଖୋଜିଲେ ମିଳିବେ ନାହିଁ । ଯେତେ ବଡ଼ ବଡ଼ ବାବୁ, ମେମ୍ ସାହାବ ସବୁ ସେଇଠି ଦଉଡ଼ନ୍ତି ସିଲାଇ କରିବାପାଇଁ ।

ବେଶ୍ ଦୁଇ ପଇସା ରୋଜଗାର ମଧ୍ୟ ହୁଏ । ସହରରେ ଅନ୍ୟ ଯେତେ ଦରଜୀ ସବୁ ଈର୍ଷା କରନ୍ତି । ମାଷ୍ଟର ମିଆଁ ଖାଲି ହସେ । ହସି ହସି କହେ, "ଆରେ ଖୋଦା ଜିସ୍ କୋ ରଖ୍‌ତା ଉସ୍‌କା କୋଇ କୁଛ୍ ନହିଁ ବିଗାଡ଼୍ ସକ୍‌ତା ।"

ପ୍ରକୃତରେ କେହି କେବେ ସାହସ କରି ମାଷ୍ଟର ମିଆଁ ଆଗରେ କଥା କହିପାରେ ନାହିଁ ।

ମିଆଁ ସାହେବ ଖୋଦା ନାଁ ଶୁଣିଲେ, ଭାବବିହ୍ୱଳ ହୋଇପଡ଼େ । ଆଖିରୁ ତା'ର ଲୁହ ଗଡ଼ି ଆସେ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ କାମ ବନ୍ଦ କରି ସେ ଘଣ୍ଟାଏ କାଳ ନମାଜ ପଢ଼େ ।

ଆଜକାଲ ମାଷ୍ଟର ମିଆଁର ଏ ପରିବର୍ତ୍ତନ ଦେଖି କେତେଲୋକ ହସି ଉଠନ୍ତି । ଅନ୍ୟ କେତେ ଦାର୍ଶନିକ ପରି ତାକୁ ଗୁହିଁ ରହନ୍ତି । ବୋଧହୁଏ ନିଜକୁ ନିଜେ ବିଶ୍ୱାସ କରିପାରୁ ନ ଥାନ୍ତି । ସତରେ କ'ଣ ମଣିଷର ଏତେ ପରିବର୍ତ୍ତନ ହୁଏ ! ଏଇ ସେହି ମାଷ୍ଟର ମିଆଁ ଯା'ର ନାଁ ଶୁଣିଲେ ଛୁଆମାନେ ଡରରେ କାନ୍ଦ ବନ୍ଦ କରି ଶୋଇ ଯାଉଥିଲେ । ଦିନ ଥିଲା, ଯେତେବେଳେ ମାଷ୍ଟର ମିଆଁର ଭୟରେ ସନ୍ଧ୍ୟାପରେ ବେରିଖ୍ ଗଳିରେ ସ୍ତ୍ରୀଲୋକମାନେ ଯିବା ଆସିବା କରୁ ନ ଥିଲେ ।

ତା'ର ଆଖିରେ ଥିଲା ନିଆଁ କୁଣ୍ଡ । ମଦଖାଇ ମାତାଲ ହୋଇ ସେ ଯେତେବେଳେ ରାସ୍ତାରେ ବୁଲୁଥିଲା, ସେତେବେଳେ ଲୋକମାନେ ଡରରେ ସେଇପାଖ ଦେଇ ଯାଉ ନ ଥିଲେ ।

**ବେରିଖ୍ ଗଳି ।**

**ଗ୍ଲେଟିଆ ଚୋଖଡ଼ା** ଗଳିଟିଏ । ଲୋକେ କହନ୍ତି, ସହର ପ୍ରଥମେ ଏହି ଗଳିରୁ ଆରମ୍ଭ ହୋଇଥିଲା । କେଉଁ ଯୁଗରୁ କେବେ ଯେ କେଉଁ ମହାପୁରୁଷ ଏହି ଗଳିର ପ୍ରଥମ ଘର ତିଆରି କରିଥିଲେ, ତାର ଇତିହାସ ଆଜି ନାହିଁ ।

କେତେ ରାଜା, ମହାରାଜା, ଧନୀ, ଜମିଦାର ଏ ରାସ୍ତାରେ ଜନ୍ମଗ୍ରହଣ କରି ଚାଲିଗଲେଣି । ଲୋକେ ହୁଏତ ମନେ ରଖିଛନ୍ତି ବା ଭୁଲିଗଲେଣି । ଆଜିର ମାଷ୍ଟର ମିଆଁ ସେଦିନ ଥିଲା ଭୁଲୁମିଆଁ । ଭୁଲୁମିଆଁ ଜୁଆନ ହେଲାଦିନୁ ଏହି ଗଳିର ରାଜା ସିଏ ।

ଭୁଲୁମିଆଁ ।

ତା'ର ମୁଦ୍‌ଗରଆ ବାହୁ ଦୁଇଟା ନଗ୍ନଇ ସେ ଯେତେବେଳେ କଣରେ ହାତମାର ଠିଆ ହେଉଥିଲ, ସେତେବେଳେ ଗଳର ବଡ଼ ବଡ଼ କୁସ୍ତିବାଲମାନଙ୍କର ମଧ୍ୟ ସାହାସ ହେଉ ନ ଥିଲ ତା' ସଙ୍ଗରେ ଯୋଡ଼ ଦେବାପାଇଁ ।

ପୁଲ୍‌କା ଉପରେ ଠିଆହୋଇ ଭୁଲୁମିଆଁ ପାଦଆଙ୍ଗୁ ଚେକଆଣି ଲୁଙ୍ଗିକୁ ଯେତେବେଳେ ଅଣ୍ଟାରେ ଖୋସି ଜଣ ଜଣ କର ସମସ୍ତଙ୍କୁ ଡାକେ ତା' ସଙ୍ଗେ ହାତ ମିଳାଇବାପାଇଁ, ସେତକବେଳେ ସମସ୍ତେ ଧୀରେ ଧୀରେ କାମର ବାହନା ଦେଖାଇ ଖସି ପଳାନ୍ତି ।

ଦୁଇ ଖ୍ୱରଟା ଗଳାମଜା ଶଦ୍ଧଦେଇ ଭୁଲୁମିଆଁ ମୁଦ୍‌ଗର ବୁଲାଏ । ପଥରକୁ ବାହାସ୍ଫୋଟ ମାରେ । ନଜର ନର୍ଘାଣ୍ଡଆ ଦେହଟାକୁ ମାଡ଼ ଦେହରେ ଖୁବ୍ ଜୋରରେ କଣ୍ଢୁଡ଼ ଢଏ । ସ୍ପି୍ଂ ଦେଲପର ବଳିଷ୍ଠ ମାଂସପେଶୀରେ ଗଡ଼ା ତା'ର ଦେହଟା କୁଦାମାର ଡେଇଁ ପଡ଼େ ।

ଅଜସ୍ର ତାଳରେ ସେ ଜାଗା ଫାଟିପଡ଼େ । ଭୁଲୁମିଆଁର କଣ, ଆଖି, ଦେହ ଓ ମନ ସବୁର ଗୋଟାଏ ବଶେଷତ୍ୱ ଅଛି ।

ଖୁବ୍ ମୋଟା କଣ । ନାକ ତଳୁ କମେ କମେ ଚବୁକ ପାଖଦେଇ ମାଡ଼ ଯାଇଛି । ଆଖି ତା'ର ସବଦା ଲଲବର୍ଣ୍ଣରେ ଫାଟି ପଡ଼ୁଥାଏ । ଭୁଲୁମିଆଁର ଆଖିକୁ ଚୁହିଁବାପାଇଁ ଦରକାର ଯଥେଷ୍ଟ ସାହସ । ତା'ର ମନର ପ୍ରତ୍ୟେକ ଅବସ୍ଥା ସେଇ ଦୁଇଟା ଆଖିରୁ ସହଜରେ ଜାଣି ହୋଇଯାଏ । ଦେହରେ ଶତସିଂହର ବଳ । ଶକ୍ତ ଓ ବଳିଷ୍ଠ ମାଂସପେଶୀ ସ୍ପଷ୍ଟ ବାର ହୋଇପଡ଼େ । ପ୍ରତିଦନ ସକାଳୁ ପାଏ ସୋରିଷତେଲ ସେ

ଦେହରେ ମାଖି ହୁଏ । ଖାସ୍ କରି ଠିକ୍ ସେତିକବେଳେ ଭୁଲୁମିଆଁର ଦେହ ଦର୍ଶନୀୟ ହୋଇପଡ଼େ । ତେଲଚିକଟା ଦେହରେ ସୂର୍ଯ୍ୟକିରଣ ଝକ୍‌ଝକ୍ ମାରୁଥାଏ ।

ଶକ୍ତ ଓ ବଳିଷ୍ଠ ଦେହ ଭିତରେ ଭୁଲୁମିଆଁର ମନ ଅତିଶୟ କୋମଳ ।

ଭୁଲୁମିଆଁ ପେଟେ ସରାବ୍ ପିଇଦେଇ ପ୍ରଳାପ କରେ; କିନ୍ତୁ କେବେ ସେ ମଦପିଇ କାହା ପ୍ରତି ଖରାପ ବ୍ୟବହାର କରିନାହିଁ । ସରାବ ପିଇ ବେରଖ୍ ଗଳିରେ ଭୁଲୁମିଆଁ ଡ଼ାକି ଡ଼ାକି କହେ, "ଏ ସାରା ଦୁନିଆରେ ତିନ୍‌ଟେ ବଢ଼ିଆ ଚିଜ୍ ଅଛି, 'ମାସୁମ୍‌ବଚ୍ଚି, ସରାବ ଔର ଫୁଲ ।' ବଚ୍ଚି ଖୋଦାକା ପୟଗମ୍ବର । ସରାବ୍ ଖୋଦାକା ଅମୃତ । ଆଉର୍ ଫୁଲ୍—ଖୋଦାକା ସର୍‌ଗମ୍ ଅଛି ।"

ସମସ୍ତେ କହନ୍ତି ଭୁଲୁମିଆଁ ଧର୍ମରେ ବିଶ୍ୱାସ କରେନା ।

ସତରେ ଭୁଲୁମିଆଁ ସେଦିନ ଧର୍ମ ବୋଲି କିଛି ମାନିବାକୁ ପ୍ରସ୍ତୁତ ନ ଥିଲା । ତା'ର ଧାରଣା ସବୁ ମଣିଷର ଗୋଟାଏ ଜାତି— ଗୋଟାଏ ଧର୍ମ । ସେଇଟା ହେଲା ମାନବିକ ଧର୍ମ । ମଣିଷକୁ ମଣିଷ ବୋଲି ଭାବିବା ସବୁଠାରୁ ବଡ଼ ଧର୍ମ ।

ତାକୁ ସମସ୍ତେ କହିଲେ ପାଗଳ ।

## -ଦୁଇ-

ସେ ଦିନର ବେରଖ୍ ଗଳି ଆଉ ଆଜିର ବେରଖ୍ ଗଳି ଭିତରେ ଆକାଶ ପାତାଳ ପ୍ରଭେଦ । ସେଦିନର ଭୁଲୁମିଆଁ ଆଉ ଆଜିର ମାଷ୍ଟର ମିଆଁ ଭିତରେ ଏତେ ପ୍ରଭେଦ ଯେ ତା'ର ପଛ ଦିନଗୁଡ଼ାକ ଯିଏ ଦେଖିଛି ତା' ପକ୍ଷରେ ହୁଏତ ଆଜିର ଏ ସବୁକୁ ବିଶ୍ୱାସ କରିବା ଅସମ୍ଭବ ହୋଇ ପଡ଼ିବ ।

ବେରଖ୍ ଗଳିରେ ଆଜିକାଲି ଭଦ୍ରଲୋକମାନେ ରହିବା ପାଇଁ ନାକ ଟେକୁନାହାନ୍ତି । ଏହି ଗଳି ଆଜି ଆଉ ବଦ୍‌ନାମ ଗଳିହୋଇ ରହିନାହିଁ । ଭୁଲୁମିଆଁ ଆଜି ମାଷ୍ଟର ମିଆଁରେ ପରିଣତ ହୋଇସାରିଛି । ବେରଖ୍ ଗଳିର ସେ ଆଉ ନବାବ୍ ନୁହେଁ । ତା'ର ହୁକୁମ ଆଉ ଚଳୁନି ।

ଫୁଲକା ଉପରକୁ ଡେଇଁ ଜଣ ମୋଡ଼ିବାର ଉମର୍ ଆଜି ଖସିଛି ।

ସେଇଥିପାଇଁ ଆଜି ସବୁ କଥାରେ ମାଷ୍ଟର ମିଆଁ ଖାଲି ହସୁଛି । ଦରଜୀ ନନ୍ଦଲାଲ୍ ଏଇ କାଳର ବନ୍ଧୁ । ଠାହି ଠାପରା କରୁଛି । ହାତରେ କଇଁଚି ଧରି ଆସୁ ନ ଥିଲା । ପତଲୁନ୍ ଖାଜା ପକାଇବାଠାରୁ ଆରମ୍ଭ କରି ସୁଟ୍ କଟିଙ୍ଗ୍ ସବୁ ଶିଖିଲା ଏଇଠୁ । ଆଜି ଖୋଲିଛି ତାରି ସାମନାରେ ଦୋକାନ ।

ପାଖରେ 'ପଇସାହେଲେ ଆଖି ଉପରକୁ ହୁଏ । ନନ୍ଦଲାଲ୍‌ର ଈର୍ଷା ଏବଂ ଠାହି ଠାପରା କଥା ମାଷ୍ଟର ମିଆଁ ଶୁଣେ । ଖାଲି ହସିଦିଏ । ପାକଲା ଜଣରେ ଥରେ ହାତ ବୁଲେଇ ଆଣେ ଅଭ୍ୟାସବଶତଃ । ଗତ ଦିନର କଥା ସବୁ ଗୋଟି ଗୋଟି ହୋଇ ମନେପଡ଼େ ।

କେଡ଼େ ପରଶ୍ରୀକାତର ଏଇ ନନ୍ଦଲାଲ୍ । ଦୁନିଆଟା ସାରା ଖାଲି ବେଇମାନ୍ । ତା'ଠାରୁ ବୁଦ୍ଧି ଶିଖି ଆଜି ତା'ର ଚେର କାଟିବା-ପାଇଁ ବସିଛି ।

ମାଷ୍ଟର ମିଆଁ ଅନୁଭବ କରୁଥିଲା କିଏ ଯେମିତି ତା' ମନ-ଭିତରେ ବିଦ୍ରୋହ କରି ଉଠୁଛି । ଏକ ମଣିଷ ଜାତିକୁ ତାହାହେଲେ ସେ ଦେଇଥିଲା ଏତେ ଉଚ୍ଚ ସମ୍ମାନ ! ଘୃଣାରେ ମାଷ୍ଟର ମିଆଁର ମୁହଁ ଶୋଠା ପଡ଼ି ଆସୁଥିଲା ।

ଆଜି ଦେହରେ ଆଉ ସେ ପୂର୍ବର ତାକତ୍ ନାହିଁ । ସିଂହର ପରାକ୍ରମ ନାହିଁ । ନ ହେଲେ ଆଜି ସେ ମୁଣ୍ଡପୋଡ଼ା ନନ୍ଦଲାଲ୍‌ର ଅପମାନକୁ ସହିଯାଇଥାନ୍ତା ! ମାଷ୍ଟର ମିଆଁ ଖାଲି ଉପରକୁ ହାତଉଠାଇ କ'ଣ ଅସ୍ପଷ୍ଟଭାବେ ଉଚ୍ଚାରଣ କରିବାକୁ ଲାଗିଲା । ବୋଧହୁଏ ଖୋଦାଙ୍କ ଉଦ୍ଦେଶ୍ୟରେ କିଛି କହିଲା ।

ବୁଖାରି ଦାନ୍ତ ରଗୁଡ଼ୁଥିଲା । ଗୋଟିଏ କାମିଜରେ ସେ ଖାଜା ପକାଉଥିଲା । ମାଷ୍ଟର ମିଆଁର ମନକଥା ସେ ଲକ୍ଷ୍ୟ କରିଛି ।

"ଓସ୍ତାଦ୍ ! ବଡ଼ ବେଇମାନ୍ ଏଇ ନନ୍ଦଲାଲ୍ ଆମର ଗରାଖ୍‌ମାନଙ୍କୁ ଏଣୁ ତେଣୁ କହି ବିଗିଡ଼େଇ ଦେଉଛି । ବେଇମାନ, ନିମକ ହାରାମ କାହାଁକା । ଗରାଖ୍ ଭଗେଇ ଦେଉଛି ।"

ବୁଖାରିର କଥାଗୁଡ଼ାକ ମନ ଦେଇ ଶୁଣୁଥିଲା ମାଷ୍ଟର ମିଆଁ । କିଛି ନ କହି ସେ ଚୁପ୍ ରହିଲା । ବୁଖାରି କଥାରେ ବିଶ୍ୱାସ କରିବା କିମ୍ବା ସନ୍ତୋଷଲାଭ କରିବାର କିଛି ନଥିଲା । ସବୁ ମଣିଷ ସେମିତି । ଧୋକାବାଜ୍, ବେଇମାନ୍, ନିମକ୍ ହାରାମ୍ ଏଇ ମଣିଷ ଜାତି ।

ଆଜି ନନ୍ଦଲାଲ୍ ଧୋକା ଦେଇଛି, ବେଇମାନୀ କରିଛି । କାଲି ବୁଖାରି ଯେ ବେଇମାନୀ ନ କରିବ, ତା'ର କଣ ଠିକଣା ଅଛି ? ଯୋଉ ନନ୍ଦଲାଲ୍ ତାର ପାଖରେ ରହି ବୁଦ୍ଧି ଶିଖିଲା, ମଣିଷ ହେଲା, ଯଦି ସେ ଠକିପାରେ, ତାହାହେଲେ କେଉଁ ମୁହଁ ନେଇ ସେ ବୁଖାରିକୁ ବିଶ୍ୱାସ-କରିବ ?

ଧର୍ମ, ଈଶ୍ୱରକୁ ଛାଡ଼ି ସେ ବିଶ୍ୱାସ କରିଥିଲା ମଣିଷକୁ । ସେ ଭଲ ପାଇଥିଲା ମଣିଷ ଧର୍ମକୁ । ସେ ନିଜେ ଥିଲା ସବଳ । ଦେହରେ ଥିଲା ଅସୁମାରି ତାକତ୍ । ସେ ଅନେକ ସମୟରେ ମଦପିଇ ମାତାଲ ହେଉଥିଲା;

କିନ୍ତୁ କେବେ ସେ ମଣିଷର ଅପମାନ କରିନି । କାହାର କିଛି କ୍ଷତି କରିନି । ଏଇ ହାତରେ ସେ ଗଢ଼ିଦେଇଛି କେତେ ଯେ ଜୀବନ ତା'ର କୌଣସି ହିସାବ ନାହିଁ । ତା'ର ପାଖରୁ ଅକଲ ଶିଖି ଅନ୍ୟମାନେ କମେଇଲେ ନାଁ, ପଇସା—କୋଠାବାଡ଼ି କଲେ । ଅଯୂସ ଓ ଆରାମରେ ଦିନ କାଟିଲେ । ସେମାନଙ୍କୁ ଦେଖି—ସେମାନଙ୍କର ସୁଖର ସଂସାର ଦେଖି, ସେ ନିଜେ ଖୁସୀ ହୋଇଥିଲି, ସେମାନେ ମଣିଷପରି ମଣିଷ ହେଲେ ବୋଲି ।

ପଇସାର ମୂଲ୍ୟ ସେ ବୁଝିନି ନ ଥିଲି । ଚାହିଁଥିଲେ ସେ ଅଜସ୍ର ଧନ-ଦଉଲତର ମାଲିକହୋଇ ପାରିଥାନ୍ତା; କିନ୍ତୁ ପଇସାର ମମତା ତା' ଭିତରର ମଣିଷତ୍ୱକୁ କିଣିପାରି ନ ଥିଲା । ପରର ଦୁଃଖରେ ସେ ବିଗଳିତ ହୋଇ ଅକାତରେ ଭାବେ ନିଜର ସବୁ କିଛି ଦାନକରି ନିଜେ ହୋଇଥିଲା ଫକୀର ।

-ତିନି-

ମାଷ୍ଟର ମିଆଁ ଆଜି ହୋଇଛି ଖୋଦାବନ୍ଦ ।

ଖାଲି ଯେ ମାଷ୍ଟର ମିଆଁର ପରିବର୍ତ୍ତନ ହୋଇଛି, ତାହା ନୁହେଁ । ସବୁ କିଛି ଏ ଦୁନିଆଁରେ ଯାହା ଥିଲି ବଦଳି ଯାଇଛି । ସେ ଯୁଗର ସବୁ ବଦଳିଛି । ଯେତେ ଆଗକୁ ସେ ଦେଖିଲା, ତା' ଆଖିରେ ଦିଶିଲା ଖାଲି ପରିବର୍ତ୍ତନର ଏ ଦୁନିଆଁ ଏମିତି ବଦଳି ବଦଳି କେଉଁ ଜାଗାରେ ଯାଇ ଯେ ପହଞ୍ଚିବ ତା'ର କଣ କିଛି ଖବର ମିଳିବ !

ଆଶ୍ଚର୍ଯ୍ୟ ହେଲା ମାଷ୍ଟର ମିଆଁ ।

ସତରେ ସେ ଦିନର ଦିଲ୍‌ଦାର ମଣିଷ ଆଉ ନାହିଁ । ମଣିଷ ପ୍ରକୃତି ଥିଲା ସରଳ, ସୁନ୍ଦର । ଦୁସରା ଆଦମୀର ଦୁଃଖରେ ତା'ର କଲିଜା ଫାଟି-ପଡ଼ୁଥିଲା । ତାକତ୍‌ଭରା ବଦନ । ସବୁବେଳେ ମୁହଁରେ ଲଗି ରହିଥିଲା, ଦିଲ୍‌ ଖୁସ୍ ଲାଯୁକ୍ ହସ ।

ଆଉ ଆଜିର ମଣିଷ । ଏତେ଼ ଗ୍ରେଟଲୋକ ! ପରଶ୍ରୀକାତର ନନ୍ଦଲାଲ୍ ଆଜି ସେଇ ସମାଜର ପ୍ରତିନିଧିତ୍ୱ କରୁଛି । ସବୁ ମଣିଷ ବେଇମାନ୍, ଧୋକାବାଜ୍ । ଦୁସରା ଇନ୍‌ସାନ୍‌ର ଦୁଃଖରେ ତାକୁ ହେମତ୍ ଦେବ କିଏ, ତାର ଗୋଡ଼ ପକଡ଼ି ଟାଣିଦେଉଛି ପଛରୁ । ଦୁନିଆଁରେ ମଣିଷ ମଣିଷର ଦୁଷମନ୍ । ଭାଇର ଭଲ ଭାଇ ସହି ପାରେନା । ମଣିଷ ହୋଇ ଉଠିଛି ମଣିଷର ସବୁଠାରୁ ବଡ଼ ଶତ୍ରୁ ।

## -ଗ୍ୟାର-

ବେରଖ୍ ଗଳିରେ ସେଦିନ ଆରମ୍ଭ ହୋଇଗଲା ଭୁମୁଳ କାଣ୍ଡ । ମାଷ୍ଟର ମିଆଁ ସିଲେଇ ଦୋକାନ ସାମନାରେ ଜମିଛି ପ୍ରବଳ ଭିଡ଼ । ଲୋକେ ଭୀଷଣ ପାଟିତୁଣ୍ଡ କରୁଛନ୍ତି । ବୁଖାରୀ ଉପରେ ଭୀଷଣମାଡ଼ ଚଢ଼ିଛି । ତା'ର ଦେହ, ମୁଣ୍ଡ ଖଣ୍ଡିଆ ଖାବରା ହୋଇ ଝର୍‌ଝର୍ ହୋଇ ନିଗିଡ଼ି ପଡ଼ୁଛି ରକ୍ତଧାରା ।

ନନ୍ଦଲାଲ ଦୋକାନ ଭିତରେ ଠିଆହୋଇ ହସୁଥିଲା । ଲୋକ-ଗୁଡ଼ାକୁ ଉସ୍‌କାଉ ଥିଲା । "ଆରେ ଶଳାକୁ ଗରମାଗରମ ଆଉ ଗ୍ୟାର ପାହାର ଦିଅ । ଅଣ୍ଡା ବଟେଇ ଗୁଡ଼ଦିଅ । ଆଉ ଯେମିତି କେବେ ବଦମାସି କରିବାପାଇଁ ହିମତ୍ ନ କରେ । କରେ ଶାଲା, "ଅସଲ ଆଦ୍‌ମିକା ଖସି ପଳାଇଲା ।"

ମାଷ୍ଟର ମିଆଁର ଖଇଫୁଟା ଜର । ଦୁଇ ଦିନ ହେଲା ଆରମ୍ଭ ହୋଇଛି ଏ ନିଆଁ ଲଗା ଜର । କି ଗୋଟାଏ ଜର ହୋଇଛି କେଜାଣି, କେତେବେଳେ ହେଲେ ଦେହରୁ ତାତି କମୁନାହିଁ । ଖାଲି ସେ ବିଛଣା ଉପରେ ପଡ଼ି ରହିଛି । ଦୋକାନ ଭାର ସବୁ ଦେଇ ଦେଇଛି ବୁଖାରୀ ହାତରେ ।

ମାଷ୍ଟର ମିଆଁ ଏମିତି ଶୋଇରହିବା ଲୋକ ନୁହେଁ । ଏଇ ଜରରେ ମଧ୍ୟ ସେ ଦୁଇ ଗ୍ଚରଥର ଉଠିଲଣି ଦୋକାନକୁ ଯିବାପାଇଁ ।

ଡାକ୍ତର କିନ୍ତୁ ମନା କରିଛି, ବିଛଣା ଛାଡ଼ିବାକୁ ଶକ୍ତ ମନା । ଏଟା କୁଆଡ଼େ ଟାଏଫଏଡ଼୍ ଜ୍ୱର ।

ରକ୍ତରେ ସାଲୁବାଲୁହୋଇ ସନ୍ଧ୍ୟାରେ ବୁଖାରି ପହଞ୍ଚିଲା । ମାଷ୍ଟର ମିଆଁ ବୁଖାରିକୁ ଦେଖି କିଛି ଭାବିପାରିଲା ନାହିଁ, ଘଟଣାଟା କଣ ! ତା'ର ମନେ ହେଲା ଭୀଷଣ ବେଗରେ ସତେ ଯେମିତି ତା' ଦେହର ଉତ୍ତାପ ବଢ଼ିବାରେ ଲଗିଛି । ରକ୍ତଚାପ ବଢ଼ିଛି । ରକ୍ତର ବେଗ ବଢ଼ିଛି । ଆଖି ଆଗରେ ଏ ପ୍ରକାର ଦୃଶ୍ୟ ଦେଖିବାପାଇଁ ମାଷ୍ଟର ମିଆଁ ମୋଟେ ପ୍ରସ୍ତୁତ ନ ଥିଲା । ସେ ସତେ ଅବା ଏଇ ମୁହୂର୍ତ୍ତରେ ପାଗଳ ହୋଇଯିବ ।

ଚିତ୍କାର କରିଉଠିଲା ମାଷ୍ଟର ମିଆଁ ।

ବୁଖାରି·········

ବୁଖାରିକୁ ସେତିକିବେଳେ ଦେଖିଲେ ଖୁନ୍ ଗରମ ହୋଇଯିବ । ସେ ଗୋଟି ଗୋଟି କରି ସବୁକଥା କହିଲା···"ଦୋକାନ ଲୁଟ ହୋଇଛି । ନନ୍ଦଲାଲ୍‌ର ଆଦ୍‌ମୀ ଗୋଲ୍‌ମାଲ୍ ସୁରୁ କରିଦେଲେ । ଗାଳିଦେଇ ଦୋକାନ ଲୁଟି ନେବାକୁ ବସିଲେ । ମୁଁ ସେମାନଙ୍କୁ ରୋକିଲି । ଜଣେ ମଣିଷ ଆଉ କେତେ ସମୟ ରୋକିପାରନ୍ତି ? ସେଇମାନେ ବନ୍ଧୁକ ମାଡ଼ ଦେଇ ଲୁଟି ନେଲେ ସବୁ ।"

ମାଷ୍ଟର ମିଆଁର ଆଖିରେ ଅଜସ୍ର ଲୁହ । ତା'ର ହୃଦୟ ଭିତରଟା ସେ ଯେମିତି ଦରଣ୍ଡି ହୋଇ ଖୋଜୁଥିଲା, ସେ ଗଢ଼ିଥିବା ମଣିଷର ଚରିତ୍ରଟାକୁ ବାହାର କରିବାପାଇଁ । ସେଇ ଶାନ୍ତ, ସୁନ୍ଦର, ପରୋପକାରୀ ମଣିଷର

ଚନ । ସେ କନ୍ଦି ତାହା ପାଇପାରୁ ନ ଥିଲା । ତା' ଆଖି ଲୁହର ସମୁଦ୍ର ଭିତରେ କେତେବେଳୁ ମଣିଷର ସେଇ ସୁନ୍ଦର ଛବିଟା ମିଳେଇ ଯାଇଥିଲା ।

ଆଖି ଆଗରେ ଝଲସୁଥିଲା ଖାଲି ସେଇ ବେଇମାନ, ବର୍ବର, ସଇତାନ ନନ୍ଦଲାଲ୍‌ର ଛବି ।

ସେଇ ନନ୍ଦଲାଲ୍, ଯାହାକୁ ସେ ମାଙ୍କଡ଼ରୁ ମଣିଷ କରିଥିଲା, ନିଜର ଶ୍ରେଷ୍ଠ ଭାଇଟି ପରି ତା'ହାତ ଧରି ଅକଲ ଶିଖେଇ ଦେଇଥିଲା, ଆଜି ସିଏ ହେଇଛି ଦୁଷ୍‌ମନ୍ ।

ହୃଦୟ ଭିତରେ ମାଷ୍ଟର ମିଆଁ ଈଶ୍ୱରଙ୍କୁ ଡାକିଲା । ବେଇମାନ, ଧୋକାବାଜ୍ ମଣିଷଜାତିର କସୁର୍ ଏବଂ ବେଇମାମୀପାଇଁ ନିଜେ ମାଫି ମାଗିଲା ।

ଆଖିରୁ ଲୁହ ପୋଛିଲା ବୁଢ଼ା ମାଷ୍ଟର ମିଆଁ । ବୁଖାରି ସେଦିନ ଗର୍ଜି ଉଠିଥିଲା ମାଷ୍ଟର ମିଆଁ ପାଖରେ ।

ଇନ୍ତକାମ୍—ପ୍ରତିଶୋଧ······

ସେ ନେବ ଏଇ ଅପମାନର ପ୍ରତିଶୋଧ । ଜାଳି, ପୋଡ଼ି ଛାରଖାର କରିଦେବ ସେ ବେଇମାନ୍ ନନ୍ଦଲାଲ୍‌ର ଦୋକାନ, ଘର, ସବୁ କିଛି । ଯୁଗ ଯୁଗ ଧରି ନନ୍ଦଲାଲ୍ ଆଖିରୁ ଲୁହ ଗଡ଼େଇବ ।

ସେ ଖୁଜେ଼ଁ ବଦ୍‌ଲା !

ବୁଖାରିର ଆଖିରେ ବଣ୍ୟପଶୁର ହିଂସ୍ରତା । ମୁହଁରେ ତା'ର ଥିଲା ଏକ ଭୟାନକ, ପୈଶାଚିକ ହସ । ଯୁଦ୍ଧଭୂମିର ଅଶ୍ୱପରି ସେ ଥିଲା ବିଚଳିତ, ବ୍ୟତିବ୍ୟସ୍ତ । ନନ୍ଦଲାଲ୍ ପ୍ରତି ତା'ର ଘୃଣା ଥିଲା ଶାଣିତ ତରବାରି ପରି ତୀକ୍ଷ୍ଣ ।

ମାଷ୍ଟର ମିଆଁ ବୁଖାଣ୍ଟିକୁ ପାଖକୁ ଡାକଲା, ତା'ର କମ୍ପିତ ହାତରେ ବୁଖାଣ୍ଟିର ମୁହଁର ରକ୍ତଧାରପୋଛି ଦେଲା ।

ଆଖିରେ ତା'ର ରକ୍ତ ସବୁ ଜମାଟ ବାନ୍ଧିଥିଲା । ଥରିଲା କଣ୍ଠରେ କହିଲା ମାଷ୍ଟର ମିଆଁ—"ବୁଖାଣ୍ଟି କସମ୍ ଖାଇ କହ, ନନ୍ଦଲାଲ୍‌ର କିଛି ନୁକ୍‌ସାନ୍ କରିବ ନାହିଁ । ମୋର କେବଳ ଏଇ ଟିକିଏ ଅର୍ଜି। ବଦ୍‌ଲା... ଇଁତକାମ ମଣିଷକୁ ସେଇ ପାପର ଜହାନୁମ୍‌ରେ ଠେଲିଦିଏ । ସେଥିରେ କାହାର କିଛି ଫାଇଦା ନାହିଁ । ଦଙ୍ଗାହାଙ୍ଗାମର ଶେଷ ନାହିଁ । ସେ ସବୁ ଇନ୍‌ସାନକୁ ସଇତାନ କରିଦେବ । କହ ବୁଖାଣ୍ଟି, ଏମିତି ଚୂପ୍ ରହିଲ ଯେ ! ସବାଲର ଜବାବ ଦିଅ ।"

ବୁଖାଣ୍ଟି ଆଶ୍ଚର୍ଯ୍ୟ ହୋଇ ଶୁଣିଥିଲା ।

ଯେଉଁ ମାଷ୍ଟର ମିଆଁର ନାଁ ଶୁଣିଲେ ଲୋକେ ଭୟରେ ତାର ପାଖ ମାଡ଼ୁ ନ ଥିଲେ, ଏ କଣ ସେହି ମାଷ୍ଟର ମିଆଁ ! ବୁଖାଣ୍ଟି ସତରେ ଆଦୌ ବିଶ୍ୱାସ କରି ପାରୁ ନ ଥିଲା । ଦେହରେ ଶତସିଂହର ବଳ ଥିବା ସେହି ପ୍ରବଳ ପରାକ୍ରମଶାଳୀ ମାଷ୍ଟର ମିଆଁ ତେବେ ଅନ୍ୟ କେହି ହେବ । ବୁଖାଣ୍ଟି ନିଜକୁ ନିଜେ ଅବିଶ୍ୱାସ କରୁଥିଲା ।

ବୁଖାଣ୍ଟି...ବୁଖାଣ୍ଟି...

ଲଣ୍ଠନର କ୍ଷୀଣ ଆଲୋକରେ ମାଷ୍ଟର ମିଆଁ ଦେଖିଲା ବୁଖାଣ୍ଟି କେତେବେଳୁ ଚାଲିଗଲାଣି ।

ବୁଖାଣ୍ଟି ତେବେ ତା'ର ଅନୁରୋଧକୁ ବେଖାତିର୍ କରିଛି । ସେ ଦେଖିପାରିନି ଏହି ପ୍ରବଳ ପରାକ୍ରମଶାଳୀ ମାଷ୍ଟର ମିଆଁର ସୁକୋମଳ ହୃଦୟକୁ ।

ମାଷ୍ଟର ମିଆଁ କାନ୍ଦୁଥିଲା । ମାଷ୍ଟର ମିଆଁ କାନ୍ଦୁଥିଲା ପ୍ରଥମ ଥର ପାଇଁ ।

ଗୃହଆଡ଼େ ତାକୁ ଖାଲି ଝାପ୍‌ସା ଦେଖାଗଲା । ସତେ ଯେମିତି ବହଳ କୁହୁଡ଼ି ମାଡ଼ିଯାଇଛି ସେ ଘରଟାସାରା । ସେ ଉଠିବାକୁ ଚେଷ୍ଟାକରି ଉଠି ପାରୁନାହିଁ । ଦେଖିବାକୁ ଚେଷ୍ଟାକରି କଛି ଦେଖି ପାରୁନାହିଁ ।

ହାତ ବଢ଼ାଇ ଦରାଣ୍ଡି ଆଣିଲା ତକିଆତଳୁ ତା'ର ସେ ଏକମାତ୍ର ସାହାରା । କେଉଁ ଯୁଗର ହାତଲେଖା ଖଣ୍ଡେ ପୁରୁଣା କୋଚଟ କୋରାନ ବହି । ସେ ବହିରେ ଖୋଦାବନ୍ଦ୍ ଖୋଜୁଛି ତା'ର ଖୋଦାକୁ—ତା'ର ଜାନ୍-ଏ-ଜିଗ୍‌ର ଇନ୍‌ସାନ୍ ଆତ୍ମାକୁ । ଯାହା କଛି ଏ ଦୁନିଆଁରେ ସତ୍ୟ, ଶିବ, ସୁନ୍ଦର ସେଇ ପୁରୁଣା, ମହଳ କେତେଖଣ୍ଡ ଦରଛିଣ୍ଡା କାଗଜର ପୋଥିରୁ ସେ ଦରାଣ୍ଡୁଛି ତା' ଜୀବନ ସାରା ।

ଆଖିରେ ଓ ତୁଣ୍ଡରେ ଲଗାଇ ବହିଟାକୁ ଜାବୁଡ଼ି ଧରିଥିଲା ମାଷ୍ଟର ମିଆଁ । ବୁଢ଼ିମଲା ଲୋକ କୁଟାଖଣ୍ଡିକୁ ସାହାରା କଲାପରି ସେ ବହି ଭିତରୁ ଖୋଜୁଥିଲା ତା'ର ଜୀବନର ସତ୍ୟ । ତା' ହୃଦୟର ସମସ୍ତ ବେଦନା ନେଇ ସେ ସବାଲ୍ କରୁଥିଲା ଈଶ୍ୱରଙ୍କୁ—ଖୋଦାଙ୍କୁ ।

ଏଇ ଦୁନିଆଁରେ କ'ଣ ଅଦଲ୍ ବଦଲ୍ ନାହିଁ ! ଆଲ୍ଲା ?

କଇଁ କଇଁ ହୋଇ କାନ୍ଦି ପକାଇଲା ମାଷ୍ଟର ମିଆଁ । କ୍ଳାନ୍ତ ଆଖିପତା ତାର ନଇଁ ପଡ଼ୁଥିଲା । କମ୍‌ଜୋର ହାତରୁ ତା'ର ଖସିପଡ଼ୁଥିଲା କୋରାନ୍ ବହିଟା । ଭୋକଲା ପେଟର ତଳ୍‌ଲଫ୍ । ପାଖରେ ଟୋପାଏ ପାଣି ଦେବାପାଇଁ ମଧ୍ୟ କେହି ନ ଥିଲା । ଦୁଇ ଦିନ ଭିତରେ ଏ ଜରଟା ତା' ଦେହରୁ ସେହି ହାଡ଼ଭଳି ତାକତକୁ ଚରିଯାଇଛି । ଶୁଖିଲା ଓଠରେ ଜିଭ ବୁଲାଇ ମାଷ୍ଟର ମିଆଁ ଢୁଲେଇ ପଡ଼ୁଥିଲା ।

## -ପାଞ୍ଚ-

କଳାପିଚୁ ପରି ନିର୍ଜନ ଅନ୍ଧାର ରାତି ।

ଏକ ବଜ୍ର ଗମ୍ଭୀର ଶବ୍ଦରେ ହଠାତ୍ ନିଦ ଖୋଲିଲା ମାଷ୍ଟର ମିଆଁର । ପରେ ପରେ ଭାସିଆସିଲା ଏକ ପୈଶାଚିକ ହସର ସୁଅ ।

ହାଃ...ହାଃ...ହାଃ... ।

କୌନ ହୈ...କୌନ ହୈ ?

ମାଷ୍ଟର ମିଆଁର କ୍ଷୀଣକଣ୍ଠରେ ଅଜସ୍ର ଉତ୍ତେଜନା । ଧୀରେ, ଧୀରେ ତେଜିଦେଲା ସେ ଲଣ୍ଠନର କ୍ଷୀଣ ଆଲୁଅଟିକୁ । ଏ କିଏ ! ଆଶ୍ଚର୍ଯ୍ୟରେ ନିଜକୁ ବିଶ୍ୱାସ କରିପାରୁ ନ ଥିଲା ମାଷ୍ଟର ମିଆଁ । ତା'ର ହୋସ୍-ହଓ୍ୱାସ୍ ଯେମିତି ଉଡ଼ିଯିବ ।

ବୁଢାଖା ହାତରେ ଗୋଟିଏ ସୁକୋମଳ ଶିଶୁ । ଆଖିରୁ ନିଦର ସ୍ପର୍ଶ ଆହୁରି ଲିଭି ନ ଥାଏ । ଶିଶୁଟିର ମୁହଁରେ ଭୟାର୍ତ୍ତ ବେଦନାର ରେଖା ସୁସ୍ପଷ୍ଟ । ସେ ଏତେଦୂର ବ୍ୟାକୁଳ ହୋଇ ପଡ଼ିଥାଏ ଯେ, କାନ୍ଦିବା ପାଇଁ ସୁଦ୍ଧା ତା'ର ସାହସ ହେଉ ନ ଥାଏ ।

ଶିଶୁଟିର ବୟସ ହେବ ଦୁଇ ବା ତିନିବର୍ଷ । ସତେ ଅବା କେଉଁ ଉଦ୍ୟାନର ସଜଫୁଟା ଫୁଲଟିଏ ।

ବୁଢାଖା ହାତରେ ରାତିର ଅନ୍ଧକାରକୁ ଉପହାସ କରି ହସିଉଠୁଛି ଶାଣିତ ଛୁରିକା । ବୁଢାଖାର ଆଖିରେ ଧ୍ୱଂସର ବହ୍ନି । ତା' ମୁହଁରେ ସଇତାନୀ ମନର ପ୍ରବୃତ୍ତିକୁ ସ୍ପଷ୍ଟ ପଢ଼ିପାରୁଥିଲା ମାଷ୍ଟର ମିଆଁ ।

"ଏ ବଚ୍ଚା କସିକା ହେି ବୁଖାରୀ"—ମାଷ୍ଟର ମିଆଁ ର ଗମ୍ଭୀର ପ୍ରଶ୍ନ ।

ପହ୍ଚାନ୍ ପାରୁନା ଓସ୍ତାଦ୍ ! ଏ ସେଇ ନମକ୍‌ହାରାମ୍ ବେଇମାନ୍ ନନ୍ଦଲାଲ୍‌ର ବେଟା । ଆଜ ତା'ର ମୁଁ ନେବ ପ୍ରକୃତ ଇନ୍ତକାମ୍—ବଦଲା ! ଚୋରର ମାଫିକ୍ ଖସି ମୋ ଆଗରୁ ପଳାଇବାର କୋସିସ୍ କରିଥିଲା ସେ । ପାଇଛି ତା'ର ଜବାବ୍ । ଜାଳପୋଡ଼ ଆଜ ଖତମ୍ କରିଦେଇଛି ତା'ର ଦୋକାନ, ମକାନ୍ ସବୁ କିଛି ।

—ତୁମେ ଶେଷରେ ଏଇ ସଇତାନୀ କାମରେ ମାତିଗଲ ବୁଖାରୀ ! ହଁ, ସେଇ ବେଇମାନ୍ ମଣିଷ ତୁମେ—ସଇତାନ୍ ନ ହୋଇ ଆଉ କଣ ହେବ ?

ବୁଖାରୀ ଆଜ ପିଇଛି ପେଟେ ସରାବ୍ । ସେ କେମିତି କ'ଣ ସବୁ କରିଛି ସେ ନିଜେ ମଧ୍ୟ ଜାଣେନା । ମାଷ୍ଟର ମିଆଁ ର ଧର୍ମକଥା ବୁଝିବାର ବା ଶୁଣିବାର ଇଚ୍ଛା ତା'ର ନାହିଁ । ବୁଖାରୀ ଖାଲି ହସୁଥିଲା ଏକ ପୈଶାଚିକ ହସ ।

—ନନ୍ଦଲାଲ୍‌କୁ ଜାନ୍‌ସେ ମାରିଦେଇ ତୁମ ଭିତରେ ଥିବା ସଇତାନ୍ ଖୁସ୍ ହେଇନି ବୁଖାରୀ ? ତମର ମତଲବ୍ ମୁଁ ବୁଝିପାରୁନି !

ମାଷ୍ଟର ମିଆଁ ର ଦେହରେ ଫେରିଆସିଛି ସତେ ଅବା ତା'ର ଅତୀତର ସମସ୍ତ ତାକତ୍ । ତା' ଆଖି ଆଗରେ ଗୋଟିଏ ମାସୁମ୍ ବଚ୍ଚାର କତଲ୍ ସେ ଦେଖିପାରିବ ନାହିଁ—ସେ ହେବାକୁ ଦେବନାହିଁ ଏ ନୃଶଂସ କାଣ୍ଡ ।

ଗର୍ଜିଉଠିଲା ବୁଖାରୀ, "ଶାଲା ନନ୍ଦଲାଲ୍‌କା ବେଟା, ଜାୟେଗା କହାଁ ବଚ୍‌କେ ? ଆଜ ଇସ୍‌କୁ ଟୁକୁଡ଼ା ଟୁକୁଡ଼ା କରକେ ରଖୁଁଗା ।"

ବୁଖାରୀର ଆଖି ଦୁଇଟା ଫୁଲି ଉଠିଲା । ସତେ ଯେମିତି ଗୋଟାଏ ହିଂସ୍ରଜାନୋଓ୍ୱାର ପରି ସେ ଆଜ ଶୋଷିଯିବ ନନ୍ଦଲାଲ୍ ପୁଅର ରକ୍ତ । ଖୁନ୍ !

ଏକ ଆହତ ସିଂହ ପରି ଗର୍ଜି ଉଠିଲା ମାଷ୍ଟର ମିଆଁ ।

—ତୁ ସଇତାନ୍ ବୁଖାରୀ, ତୁ ସଇତାନ୍; କିନ୍ତୁ ଏ ବୁଢ଼ା ମାଷ୍ଟର ମିଆଁର କମ୍‌ଜୋର ହାତରେ ଆଜ ମଧ୍ୟ ତାକତ୍ ରହିଛି । ନନ୍ଦଲାଲ୍ ପୁଅର ଜାନ୍ ଖତମ୍ କରିବା ପୂର୍ବରୁ ମତେ ଖୁନ୍ କର ବୁଖାରୀ—ଏଇ ବୁଢ଼ା ମାଷ୍ଟର ମିଆଁକୁ ଖୁନ୍ କର ।

ମାଷ୍ଟର ମିଆଁ କୁଦିପଡ଼ିଲା ବୁଖାରୀ ଉପରକୁ । ତା' ଦେହରେ ଏତେ ତାକତ୍ ଯେ କୁଆଡ଼ୁ ଆସିଲା ସେ ଜାଣିପାରିଲାନାହିଁ । ଝାମ୍ପି ନେଲା ସେ ଶିଶୁଟିକୁ ବୁଖାରୀ ହାତରୁ । ପୁତ୍ର ସନ୍ତାନହୀନ ମାଷ୍ଟର ମିଆଁର ହୃଦୟ ମମତାରେ ଭରିଗଲା । ତା' ଗାଲରେ ଚୁମ୍ବନ ଦେଇ ତାକୁ ଛାତିରେ ଜାବୁଡ଼ି ଧରିଲା ବୁଢ଼ା ମାଷ୍ଟର ମିଆଁ ।

ଓସ୍ତାଦ୍ ! ଚଲିଯାଅ ଓସ୍ତାଦ୍ । ତୁମର ଖୋଦା ଆସିଲେ ମଧ୍ୟ ତାକୁ ଆଜ ବଞ୍ଚେଇପାରିବେ ନାହିଁ । ବୁଖାରୀ ଆଜ ବୁଖାରୀ ନୁହେଁ, ସେ ସଇତାନ୍—ସେ ଇନ୍‌ସାନ୍ ନୁହେଁ, ହୈଓ୍ୱାନ୍ । ଖୁନ୍‌ର ବଦଲା ଖୁନ୍ । ଖୁନ୍ କେବଳ ମୋର ଆତ୍ମାକୁ ଖୁସ୍ କରିବ । ମୋର ଦାଢ଼ୁଆ ଛୁରୀ ଚାହେଁ ଖୁନ୍···ଖାଲିଖୁନ୍ । ବେଇମାନ୍ ନନ୍ଦଲାଲ୍‌ର ଖାନ୍‌ଦାନକୁ ଖତମ୍ ନ କଲେ ମୋର ଅବଶୋଷ ରହିଯିବ ।

ବୁଖାରୀ ! ଏ ନନ୍ଦଲାଲ୍‌ର ବଡା ମୁଦ୍ଦେ—ଏ ଖୋଦାଙ୍କର ପୟଗମ୍ବର । ଏ ମାସୁମ୍ ବଡା ଇନ୍‌ସାନୀ ଆତ୍ମାର ଆଓ୍ୱାଜ୍ । ତାକୁ କତଲ୍ କରିବାର ତାକତ୍ ତୁମର ନାହିଁ—ତୁମ ଖୋଦାର ବି ନାହିଁ ।

ବୁଖାରୀ ହାତରେ ଲହରେଇ ଉଠିଲା ଇସ୍‌ପାତର ତୀକ୍ଷ୍ଣ ଛୁରୀ । ଏଇକ୍ଷଣି ଶିଶୁଟିକୁ ଟୁକୁଡ଼ା ଟୁକୁଡ଼ା କରିଦେବ । ଶିଶୁଟି ଆଗରେ ସିନା ଦେଖାଇ ଦେଇଛନ୍ତି ମାଷ୍ଟର ମିଆଁ । ଭୂଇଁତଳେ ଲୋଟିପଡ଼ିଲା ମାଷ୍ଟର ମିଆଁର ରକ୍ତ ସାଲୁବାଲୁ ଦେହ । ଲଣ୍ଠନର କ୍ଷୀଣଆଲୋକରେ ଚକ୍‌ମିକ୍ କରୁଛି ମାଷ୍ଟର ମିଆଁର ଗ୍ରୀବାରେ ଭ୍ରୂଷି ହୋଇଥିବା ଇସ୍ପାତ ଛୁରୀ ।

ମାଷ୍ଟର ମିଆଁ ହାତରୁ ଛିଟିକି ପଡ଼ିଥିବା ଉପୁଡ଼ାଡ଼ ଶିଶୁଟିର ବିକଳଚିତ୍କାର ନିସ୍ତବ୍ଧ ରାତ୍ରିକୁ ସକରୁଣ କରି ତୋଳୁଛି ।

ମାଷ୍ଟର ମିଆଁର ଆଖିରେ ଥିଲା ଏକ ଉଦ୍ଦାମ ହସର ସ୍ପର୍ଶ । ତାର ଉଜ୍ଜ୍ୱଳଆଖିର କୋଣାନ୍ତରେ ସେ ଯେମିତି ଉପହାସ କରୁଥିଲା—ପାରିଲୁନି ବୁଖାରୀ···ତୁ ପାରିଲୁନି, ନନ୍ଦଲାଲ୍‌କୁ ତୁ ଜିଣି ପାରିଲୁନି ।

—·——

ଶ୍ରୀ ନନ୍ଦକିଶୋର ମିଶ୍ର

# ଗୋପାଳିଆ

ବଜାରରେ ଗୋପାଳିଆ···

ଡ଼ି···

ନଡ଼ିଆ ଗଛରୁ ଯେମିତି ପଡ଼ିଲ୍, ଗୋଟାଏ ନଡ଼ିଆ । ତା'ପରେ ହୋ, ହୋ, ପାକେଲ ଗାମୁଛା ହଲ୍, ପାଟି ଗୋଳ । ମଙ୍ଗଳାଘାଟ କମ୍ପି ଉଠିଲ୍ । ଚହଳ ପଡ଼ିଗଲ୍ । ଜାଗାର ଶନିଆଁ ହାରି ଯାଇଚି । ଗଲ୍ ଷ୍ଟର ବର୍ଷ ଧରି ଯେ ଥିଲ୍ ଅଜେୟ, ସେ ହାରି ଯାଇଚି । ଜାଗା ସାଙ୍ଗଙ୍କର ମୁଣ୍ଡ ତଳକୁ ହୋଇ ଯାଇଛି । ଶନିଆଁକୁ ଧରି ପଳାଇବାକୁ ବାଟ ପାଇ ନାହାନ୍ତି ।

ଗାମି ମା ମହାପାତ୍ରଙ୍କୁ ଠେକି ଧରିଲେ···ଜାଗା ପିଲେ । ଗଳାରେ ତା'ଙ୍କର ପିନ୍ଧାଇ ଦେଲେ ଗଜରା ମଲ୍ଲିମାଳା । ଆଉ ଗୋଟିଏ ଗୋପାଳିଆ ବେକରେ । ଗୋପାଳିଆ ମ୍ହେଁ ହେଁ···ମ୍ ହେଁ ହେଁ ବୋବାଇ ଦୁଇଥର ଷାର ଦର୍ପରେ ଗାମି ମା ମହାପାତ୍ରଙ୍କ ଗୃହପାଖେ ବୁଲି ଆସିଲ୍ । ଲୋକେ ଘେରି ରହିଥିଲେ ସେ ଦୁହିଁଙ୍କୁ । ଆଃ, କି ସୁନ୍ଦର ! ବୋଦା ତ ନୁହେଁ,

ଲହୁଣୀ ଖଣ୍ଡେ । ଅଣ୍ଟେ ଉଞ୍ଚ । ଧୋବ ଫର ଫର ଲୋମ । କଣ୍ଠ ହୋଇ ବଢ଼ୁଛି ଠିକ୍ ଗୋଟିଏ ସିଂହ ଭଳି । ଗଳାରୁ ସାମାନ୍ୟ ତଳ ପର୍ଯ୍ୟନ୍ତ ବେଶ୍ ଘଞ୍ଚ ଲୋମ—କେଶର ଭଳି । ତା'ପରେ ପୋଷ୍ଟ କଣ୍ଠ ହୋଇଛି । ଶିଙ୍ଘ ଦୁଇଟି ମୋଡ଼ି ମୋଡ଼ି ହୋଇ କାନ ପଛ ପାଖେ ବୁଲି ବାହାରି ପଡ଼ିଛି ଆଗକୁ । ରଙ୍ଗ ଦୁଧ ଅଳତା ଭଳି । ଘନ ଲୋମ ସାଙ୍ଗକୁ ଟୁଷ୍ଟ ମୁହଁଟି ତା' ସାଙ୍ଗକୁ ଗ୍ରେଟ ମାଳ ଆଖି ଦୁଇଟି—ମାଣିକ୍ୟ ଯୋଡ଼ିଏ ଯେମିତି ।

ପାଚକ ପାଣି, ପୋଖରୀ ପାଣି ଆଦ୍ର ସଞ୍ଜବେଳକୁ ଅନ୍ଧାର ହୋଇ ଗଲାଣି । ଗହଳ ବଢ଼ି ଗଲାଣି । ଯମୁନା ଗାଧୁଆ । ଜନ୍ମାଷ୍ଟମୀ ପରଦିନ । ମଙ୍ଗଳା ଘାଟ କମ୍ପୁଟି ହୁଲସ୍ଥୂଳ । କେଉଁ ଏକ ଜାଗାର ପଲଟଣ ଆସୁଛି । ଦୂରରୁ ପେଟ୍ରୋମାକ୍ସ ଆଲୁଅ ଦେଖା ଗଲାଣି । ଆଗରେ ରଜାଘର ହାତୀ ଠେଲି ଠେଲି ଆସୁଛି । ଘଣ୍ଟି ବାଜୁଛି ଟଣ ଟଣ । ତା' ପଛରେ ପଲଟଣ । ହାରମୋନିୟମ ସଙ୍ଗେ ସଙ୍ଗେ ସଙ୍ଗୀତର ଲହର ଭାସି ଆସୁଛି । ଆଖେଡ଼ା ପିଲା ନାଚି ନାଚି ଆସୁଛନ୍ତି ବୋଧହୁଏ । ଘାଟ ଉପର ଆଖେଡ଼ାରେ ଚାଲିଛି ଗୋଟିପୁଅ ନାଚ । ବାସୁଦେବପୁର ପିଲେ । ବେଶ୍ ନାଚୁଛନ୍ତି । ସମସ୍ତେ ମୁଗ୍ଧ । ଆଗରେ ଚକାଟେ ମାଡ଼ି ବସି ପଡ଼ିଛନ୍ତି ରାମିମା ମହାପାତ୍ରେ । ଆଖି ତାଙ୍କର ଗୋଟିପୁଅଙ୍କ ଉପରେ, ମାତ୍ର ସେ ଦେଖୁଛନ୍ତି ଗୋଟାଳିଆ ଆଉ ଶନିଆଙ୍କର ଲଢ଼େଇ । ମଧୁର ନିଶାଲାଗି ଆସିଲାଣି । ଆଖି କାଲିଅ କାକୁଡ଼ିଆ ବୁଲି ଆସୁଛି ।

"ଦାମୀବୋଉ···ଦାମୀବୋଉ ମଁ···"

"ମ୍ହଁ ହେଁ ହେଁ···" ମ୍ ହେଁ ହେଁ···"

"ସରୁ ଗଳି । ଧାଡ଼ି ଧାଡ଼ି ଘର । ଗୁଳି । ଉଞ୍ଚ ଉଞ୍ଚ ପିଣ୍ଡା, ପଥରର । ସେଇଭଳି ଏକ ଉଞ୍ଚ ପଥର ପିଣ୍ଡା ଆଉ ନୁଆଁଣିଆ ଗୁଳି ଘର ଉପରକୁ ଉଠିଯାଇ ଦୁଆର ବାଡ଼େଇ ଡ଼ାକଲେ ରମିଣା ମହାପାତ୍ରେ । ତାଙ୍କ ସଙ୍ଗେ ସ୍ୱର ମିଳାଇଲା ଗୋପାଳଅା । ରାତ୍ରି ପ୍ରାୟ ବାରଟା । ନବମୀର ମେଞ୍ଚା ମେଞ୍ଚା ଜହ୍ନ ଆଲୁଅ ଗୁଡ଼ଇ ଗୁଡ଼ଇ ହୋଇ ପଡ଼ୁଚି ରାସ୍ତାର ଠାଏ ଠାଏ । ବୁଲା କୁକୁରଟାଏ ଘଉ ଘଉ ହୋଇ ଭୁକି ଦୌଡ଼ି ଗୁଳିଗଲା ସରୁ ହାଡ଼ ଗୋହିରୀ ଭିତରକୁ ।

"ଦାମୀ ବୋଉ ମ୍ମ̐..."

"ହଃ ଅଇଲେ ବୁଲି ବୁଲି କୁଆଡ଼ୁ ରାତି ଅଧକୁ । ଇଆଡ଼େ ପିଲାଟାର ଜର ଯେ କହିଲେ ନ ସରେ । ଯୁଆଙ୍କର ସଉକି ଦେଖ ! ବାଡ଼ପଡ଼ା ମେଣ୍ଢାଟା ମରଯା'ନ୍ତା..."

ହାଁ ପାଟି କରନ୍ତି କହୁଚି ଦାମୀ ବୋଉ । ସେ ଅଲକ୍ଷଣୀ କଥା-ଗୁଡ଼ାକ କାହିଁକି ପାଟିରେ ଧରୁଚି କହିଲ ?

"ଅଲକ୍ଷଣୀ କଥା ନୁହଁ !"

"କେଁ...ଏଁ...ଏଁ...ଖଟ୍...ଖଟ୍...ଖଟ୍—"ଦୁଆର ଖୋଲିଗଲା ଆର୍ତ୍ତନାଦ କରି । ଡିବି ଆଲୁଅରେ ଦେଖାଦେଲେ କୋଡ଼ିଏ, ବାଇଶି ବର୍ଷର ଯୁବତୀଟିଏ । ହଳଦୀ ଗଣ୍ଠି ଭଳି ରୂପ । ପୂରିଲା ପୂରିଲା ଦେହ, କପାଳରେ ଜଳୁଚି ଅଧୁଲି ଆକାରର ସିନ୍ଦୁର ଟୋପା । ନାକରେ ଗୁଣା ।

"ମେଣ୍ଢାଟାକୁ କହିଲାରୁ ବାଧିଲା । ଦେଖିଲ, ପୁଅ ଦେହରେ ଏଣେ କେମିତି ଖଇ ଫୁଟୁଚି ?"

"ଗୋପାଳିଆ, ଆ, ଚାଲିଆ ଭିତରକୁ"—ଶେଷ କଥାଗୁଡ଼ିକ କାନରେ ତାଙ୍କର ବାଜିନ । ଭଙ୍ଗାଳଶା ଏପର୍ଯ୍ୟନ୍ତ ପୂରା ଗୁଡ଼ିନ । ମେଣ୍ଢାଟିକୁ ଟାଣି ଟାଣି ଆଣି, ଅଗଣା ଭିତରେ ଗୁଳିଆତଳେ ବାନ୍ଧି ଦେଲେ ।

ଦାମୀ ବୋଉର ହୃଦୟରୁ ଏକ ଦୀର୍ଘ ନିଃଶ୍ୱାସ ବାହାରି ମିଳାଇ ଗଲା ମହାଶୂନ୍ୟରେ ।

"ଘାସବାଲା ଆଜି ଘାସ ଦେଇନ ? ଆସୁ ସେ ଗଣ୍ଡି କାଲି, ବସି କେତେ ବଢ଼ୁରେଇଥିଲା, କହିଲ ?" ଘରଯାକ ଅଣ୍ଟାକୁ ଅଣ୍ଟାକୁ ଅଧୀର ହୋଇ ପଚାରିଲେ ମହାପାତ୍ରେ ।

"ଆଏ, ଗୋଡ଼ ହାତ ଧୁଅ । ଖାସା ମେଣ୍ଢା ପ୍ରେମ ଲାଗିଲା ଯାଙ୍କୁ ।'

"ତୁମେ ସେ ସବୁ କହୁଛ କହନ । ମୋ ଗୋପାଳିଆ ଆଜି କିଚ୍ଚ" ଗୋପାଳିଆ ପାଖକୁ ଯାଇ, ତା ପିଠି ଆଉଁଷି ଆଉଁଷି କହିଲେ— "ମାଆଙ୍କୁ କହିଦେବୁଟି ଗୋପାଳିଆ ।"

ସେମିତି ମହାପାତ୍ରେ ଗୋପାଳିଆ କଥା ଚିନ୍ତା କରୁ କରୁ ଶୋଇ ପଡ଼ିଥିଲେ । ସ୍ୱପ୍ନ ଦେଖୁଚନ୍ତି, ଗୋପାଳିଆ ଗୃଳିଛି ଦିଗ୍‌ବିଜୟ କରି । ପୁରି ସହର ଆଖ ପାଖରେ ଏମିତି ଆଉ ବୋଦା ନାହିଁ, ଯେକି ମୁଣ୍ଡ ନୋଇଁନ ଗୋପାଳିଆ ପାଖରେ । କଟକ ସହର ବୋଦା ଆସିଚନ୍ତି । ହାରି ଗୃଳି ଯାଇଚନ୍ତି । ଗୋଟିଏ ତାଳରେ ମାଟି କାମୁଡ଼ି ପଡ଼ିଚନ୍ତି । ଗୋପାଳିଆର ନାଁ ଡାକ । ମହାପାତ୍ରଙ୍କର ବ । ଏମିତି ସଉକିନ ମାଲିକ କେବେ ଦେଖା ନ ଥିଲେ । × × × ଦାମୀ ଚାଲି ବୁଲି କରି ଗୋପାଳିଆକୁ ଆଉଁଷୁଚି । ଘାସ ଖାଇବାକୁ ଦଉଚି । ସେ ଦିନ ଦାମୀ ଘାସ ଦେଉ ଦେଉ

ହଠାତ୍ ଗୋପାଳଆର କ'ଣ ହୋଇଗଲା, ଛନପାଦ ପଛକୁ ଆସି ମୁଣ୍ଡ ତଳକୁ କରି ମାଡ଼ିଗଲା ଦାମୀ ଆଡ଼କୁ ବଜ୍ରକ ବେଗରେ। ତାଳ ଯାଇ ବାଜିଲା ଦାମୀର ଗ୍ରୁଡରେ।

"ଗୋପାଳଆ··· !" ଚିତ୍କାର କରି ଉଠିଲେ ରାମିମା ମହାପାତ୍ର ନିଦ ବାଉଳାରେ। ନିଦ ତାଙ୍କର ଭାଙ୍ଗିଗଲା।

ଆଲୋ ମୋ ଦାମୀର କ'ଣ ହେଇ ଯାଉଚଲେ—ପାଖଘରୁ ବିଳପି ଉଠିଲେ ଦାମୀବୋଉ। ଧାଇଁ ଆସି ହଲାଇ ପକାଇଲେ ମହାପାତ୍ରଙ୍କୁ, ଏ ଶୁଣୁଚ, ମୋ' ଦାମୀର କ'ଣ ହେଇ ଯାଉଚି··· ଶୁଣିଲଣି···"

ଧଡ଼ପଡ଼ ହୋଇ ଆଖି ମଳି ମଳି ଉଠି ପଡ଼ିଲେ ରାମିମା ମହାପାତ୍ରେ। ଦେଢ଼ବର୍ଷର ଦାମୀ ଆରଘରେ। ଶୁଖି ବଣି ଚଢ଼େଇଟି ଭଳି ହୋଇ ଯାଇଚି। ଦେହରେ ତାତି ଯେ, ଖଇ ଫୁଟୁଚି। କାନ୍ଦି ପାରୁନି। କଲବଲ ହୋଇ ପଡ଼ୁଚି। ମହାପାତ୍ରେ ପୁଅ ଦେହରେ ହାତ ମାରି ଚମକି ଉଠିଲେ।

"ଦାମୀ ବୋଉ, ପାଣି ଟିକେ ଆଣିଲ। ମୁଣ୍ଡଟା ଟିକଏ ଧୋଇ ଦିଏ। ତାତି କମିଯିବ। ଜର ଟିକଏ କମିଗଲେ ଉଦ୍‌ବେଗ ଲାଗିବନି ଆଉ। ସକାଳ ହଉ, ଡାକ୍ତର ଡାକିବା।"

ଦାମୀ ବୋଉ ଧାଇଁ ଯାଇ ପାଣି ଟିକେ ଆଣି ପୁଅ ମୁଣ୍ଡ ଧୋଇ ଦେଲେ। ଦୁହେଁ ବସି ରାତିଯାକ ପୁଅ ମୁଣ୍ଡରେ ପାଣି ପଟି ଦେଉଥାନ୍ତି।

ପାହାନ୍ତିଆ ପହରକୁ ଶୋଇ ପଡ଼ିଥିଲେ ରାମିମା ମହାପାତ୍ରେ। ସକାଳ ପ୍ରାୟ ଆଠଟା ହେଲାଣି। ନିଦ ଭାଙ୍ଗିନି। ହଠାତ୍ ଚଇଁଆର ପାଟିରେ ନିଦ ତାଙ୍କର ଭାଙ୍ଗିଗଲା। ଚମକି ଉଠି ପଡ଼ିଲେ—"ଏଁ। ଗୋପାଳଆ

ଥରୁଚ !" ଭୁଲ ଯାଇଥିଲେ ସେ ପୁଅ ଦାମ କଥା । ଗୋପାଳଆ ଥରୁଚ ଶୁଣି ତାଙ୍କ ହୃଦୟ ବ ଥର ଉଠିଲା । ନଦ ବାଉଳାରେ ଦାନ୍ତ ପସ ନ ଘଷି ଗୋପାଳଆକୁ ଧର ଧାଇଁଗଲେ ପଶୁ ଡାକ୍ତରଖାନା ।

ଡାକ୍ତରଖାନାରୁ ଗୋପାଳଆକୁ ଧର ଫେରିଲାବେଳକୁ ମନ ତାଙ୍କର ବେଶ୍ ଆନନ୍ଦ । ଡାକ୍ତର ଅଭୟ ଦେଇଚ, ସେ କଚ୍ଛୁ ନୁହେଁ । ଥଣ୍ଡାରୁ ଏମିତ ହୋଇଗଲା । ଇଞ୍ଜେକ୍‌ସନ୍ ଗୋଟିଏ ଦେଇଚ । କାଲକୁ ଭଲହୋଇ ଯାଇଥିବ । ଗୋପାଳଆକୁ ଆଉଁଷ୍ ଆଉଁଷ୍ ମହାପାତ୍ରେ କହ୍ନଲେ—"ବଡ଼ କଷ୍ଟ ହେଇଚ ତତେ, ନାଇଁରେ ?"

ସାଇମୁଣ୍ଡରେ ହେଲାବେଳକୁ ହଠାତ୍ ପାଦ ତାଙ୍କର ଅଟକ ଗଲା । ଘର ସାମନାରେ ତାଙ୍କର ରୁଣ୍ଡ ହୋଇଚନ୍ତ ସାଇପାକର ଲୋକ । ସବୁର ମୁହଁରେ ଦୁଃଖର କଳା ଛାଇ । ସମବେଦନାର ସ୍ୱର-ଆହା-ଆହା- । ଘର ଭତରୁ ଭସି ଆସୁଚ ଦାମ ବୋଉଙ୍କର ବୁକୁଫଟା କରୁଣ ଚତ୍କାର ।

ଥକ୍‌କା ହୋଇ ବସି ପଡ଼ଲେ ବ୍ରମିମା ମହାପାତ୍ରେ ସେଇ ଦାଣ୍ଡ ମଝିଟାରେ । ଆଖିରୁ ତାଙ୍କର ଖସି ପଡ଼ଲା ଦୁଇ ଟୋପା ଲୁହ ।

ଗୋପାଳଆ ସ୍ଥାଣୁ ହୋଇ ଚାହିଁ ରହିଥିଲା ତା ମାଲିକଙ୍କ ମୁହଁକୁ । ମୁହଁ ତାର ଥିଲା ଭାବହୀନ ।



ଶ୍ରୀ ଗଣେଶ୍ୱର ମିଶ୍ର

# କଟକ ସହରର ରୂପକଥା

କଟକ ସହରର ଯେଉଁ କୋଣରେ ବର୍ଷାପାଣି ଜମି ସବୁବେଳେ ଉତ୍କଟ ଗନ୍ଧ ବାହାରେ ଓ ଦୁଇ ତିନୋଟି ବଡ଼ ବଡ଼ ବରଗଛର ଗହଳିଆ ପତ୍ରଯୋଗେ ସ୍ଥାନଟି ଦିନ ଦି' ପହରେ ବି ଅନ୍ଧାରୁଆ ଦେଖାଯାଏ, ସେଇଠି ରିକ୍ସାବାଲା, କଂସେଇ, ଷ୍ଟେସନର କୁଲି, ମାଗିଖିଆ, ପକେଟ ମାରୁ ଓ କେତେଜଣ କୁଷ୍ଠରୋଗୀଙ୍କ ଧାଡ଼ି ଧାଡ଼ି କୁଡ଼ିଆ ଘର ।

ଅଳ୍ପ ଦୂରରେ କାଠଯୋଡ଼ି ବନ୍ଧ—ବେଳେ ବେଳେ ବନ୍ଧ ପାଖଦେଇ ଯାଇଥିବା ରାସ୍ତାରେ ରିକ୍ସାର ଟିନ୍ ଟିନ୍ ଶବ୍ଦ, କମ୍ପା ବସ୍‌ର ଗର୍ଜନ ବା ଲୋକମାନଙ୍କର ପାଦଶବ୍ଦ ଓ କଥାଭାଷା । ଦିନ, ରାତି, ସଞ୍ଜ, ସକାଳ, ସବୁବେଳେ ରହି ରହି ସେ ବନ୍ଧ ଉପରେ କୌଣସି ନା କୌଣସି ଶବ୍ଦ—ମଣିଷର କର୍ମବ୍ୟସ୍ତତାର ସୂଚନା ଆଉ ସେଇ ଶବ୍ଦ-ସମୁଦ୍ର ଭିତରେ କେତେବେଳେ ଘଣ୍ଟା ଠନ୍ ଠନ୍ କରି ରିକ୍ସାବାଲା ରାବଣା ଷ୍ଟେସନକୁ ଯାଏ, କେତେବେଳେ ଅନ୍ଧବୁଢ଼ା ଭଜମନ ବାଡ଼ି ଠକ ଠକ କରି ବାବୁମାନଙ୍କୁ ନିଜ ଅଞ୍ଚଳର ଦୋହାଇଦେଇ ପଇସା ମାଗେ, କେତେବେଳେ

କିଂବା ସେଇ ରହମତ୍ ମୁଣ୍ଡରେ ରକ୍ତ ଜୁଡ଼ୁବୁଡ଼ୁ ଗୋରୁ ମାଂସର ବୋଝକୁ ମୁଣ୍ଡାଇ ସିନେମାର ହିନ୍ଦୀ ଗୀତ ବୋଲି ବୋଲି ପଠାଣ ପଡ଼ାକୁ ବାହାରେ, ତାହା କଳନା କରିବା କଠିନହେଲେ ହେଁ ଅସମ୍ଭବ ନୁହେଁ, କାରଣ ପ୍ରତ୍ୟେକଙ୍କର ଏକ ଏକ ନିର୍ଦ୍ଦିଷ୍ଟ ସମୟ ଅଛି । ଯଥା—ସକାଳୁ ଯେତେବେଳେ ତେରଛା ସୂର୍ଯ୍ୟ ଆଲୁଅ କାଠଯୋଡ଼ି ବନ୍ଧ ଉପରେ ବିଛେଇ ପଡ଼େ, ସେତିକିବେଳେ ରିକ୍ସାବାଲା ରାବଣା ତା ରିକ୍ସାଟି ଧରି ଦିନର କର୍ତ୍ତବ୍ୟ ପାଇଁ ପ୍ରସ୍ତୁତ ହୁଏ ଏବଂ ସକାଳର ଟ୍ରେନ୍ ଗାଡ଼ିଟା କାଠଯୋଡ଼ି ପୋଲ ପାରିହେବା ପରେ ପରେ ଅନ୍ଧ ଭିକାରି ବୁଢ଼ା ଭଜମନ ସହର ଅଭିମୁଖେ ଯାତ୍ରା ଆରମ୍ଭ କରେ ।

ରାବଣାର ଘର ତିନିପାଖେ ପାଣି । ବର୍ଷା । ପରେ ସହରର ସବୁ ଅନ୍ଧକନ୍ଦରୁ ପାଣି ଶୁଖିଲେ ବି ରାବଣା ଘର ପାଖେ ସବୁବେଳେ ପାଣି ଜମି ରହେ । ଦିନସାକ ମାଛି ଓ ସଞ୍ଜ ବୁଡ଼ୁ ବୁଡ଼ୁ ଅପର୍ଯ୍ୟାପ୍ତ ମଶା ରାବଣା ଘରେ ଆଡ୍ଡା କରନ୍ତି । ରାବଣା ଭାତ ଥାଳିରେ ମୁଠା ମୁଠା ମାଛି ବସି ତା ସଙ୍ଗେ ଭାତ ଖା'ନ୍ତି ଓ ରାତିରେ ଗୁଣୁଗୁଣୁ ଗୀତ ଗାଇ ଡାଆଁଶ ଆକାରର ମଶାମାନେ ତାର କାଳିଆ ଅପରିଛନିଆ ଦେହରୁ ତାଜା ଉଷୁମ ରକ୍ତ ଶୋଷି ନିଅନ୍ତି । ସବୁଦିନ ରାବଣା ମଶାମାନଙ୍କ ଉପରେ ରାଗେ, ମଶା ଏଡ଼ାଇବା ପାଇଁ ନିଜ ପିଠିକୁ ଚଟକଣି କଷେ, ମଶାମାନଙ୍କ ଭଉଣୀ ସଙ୍ଗେ ନିଜ ସମ୍ପର୍କ ଯୋଡ଼େ ଓ ମନକୁ ମନ ବକର ବକର ହୁଏ । ସଞ୍ଜ ପହରକୁ ପକେଟମାରୁ ଠିକରା "ରାବଣା ଭାଇ; ଆଇଲୁଣୁ କରେ" କହି ରାବଣା ଘରକୁ ଆସେ । ଦୁହେଁ ଶିବ ଭକ୍ତ ରାତି ଅଧ ଯାଏଁ ଘୁଡ଼ୁ ଘୁଡ଼ୁ କରି ହୁକା ଟାଣନ୍ତି । ଠିକରା କେମିତି କେଉଁ ବାବୁଙ୍କ ପକେଟ କାଟିଛି, ସେ କାହାଣୀ ବର୍ଣ୍ଣନା କରେ । ନିଶାରେ ଆଖି ଢୁଳୁ ଢୁଳୁ କରି ହାଡ଼ୁଆ ଆଙ୍ଗୁଠିକୁ ବାରମ୍ବାର ନିଶ ଉପରେ ବୁଲାଇ ରାବଣା କହେ—ଜଣେ ବାବୁଙ୍କ ସଙ୍ଗେ ସଲା ହୋଇ ଅସଲ ଦେଶୀ ଗଞ୍ଜେଇ କିଛି ଆଣିବାର ସେ ବ୍ୟବସ୍ଥା

କରୁଛି । ଠକର୍ ଏ କଥା ଶୁଣି ଏକାବେଳକେ ତରଳ ଯାଏ । 'ଗ୍ରବଣାଭାଇ' 'ଗ୍ରବଣାଭାଇ' ବୋଲ ତାକୁ ଆଉ ରାତିରେ ନିଦ ଲାଗେନାହିଁ । ରାବଣା କେଉଁଦିନ ଦେଖାମାଲ ଆଣିବ, ସେଇ ସୁଦିନକୁ ସେ ଅପେକ୍ଷା କରି ରହେ ।

ରାତି ଅଧକୁ ଖଟି ସାରି ଠକର୍ ଉଠେ । କୁଆଡ଼େ ସେ ଯାଏ, ଜାଣିବା ସହଜ ନୁହେଁ । ବେଳେ ବେଳେ ସିନ୍ଧକାଠି ଓ ଦଉଡ଼ି ଦ'ଖଣ୍ଡ ଧରି ଅନ୍ଧାରୁଆ ମାଛି ମଶାପୂର୍ଣ୍ଣ ଗଳିରେ ଗଳିରେ ସେ ସହର ଅଭ୍ୟନ୍ତରରେ ପ୍ରବେଶ କରେ ଏବଂ ପାହାନ୍ତିଆ ପହରକୁ କିଛି ନ ଜାଣିବା ପରି ରୂପକନା ଘରକୁ ଫେରେ । ତା ଫେରିଲାବେଳେ କୁକୁରମାନେ ବି ଭୁକନ୍ତି ନାହିଁ । କାରଣ ସେମାନେ ଜାଣନ୍ତି ଯେ, ପାହାନ୍ତିଆରେ ଫେରୁଥିବା ଲୋକଟି ନିଷ୍ଟୟ ସେମାନଙ୍କର ପ୍ରିୟବନ୍ଧୁ ଠକର୍ । ଠକର୍ କୁକୁରମାନଙ୍କ ଆଗରେ ଗିନା ଗିନା ଅଇଁଠା ଭାତ ଅଜାଡ଼ିବାରୁ କୁକୁରମାନେ ତାକୁ ଦେଖି ଲାଞ୍ଜ ହଲାନ୍ତି । ଭୁଇଁରେ ବସି ଶୁଖିଲା ମାଡ଼ିଉପରେ ଜିଭ ବୁଲାନ୍ତି । ବସ୍ତିରେ ଭେଳା ଭେଳା ରୋଗା ବୁଢ଼ା କୁକୁର—ଦେହରେ ଚେକା ଚେକା ଘାଦୁ ଓ ଭଣଭଣ ମାଛି, କେଉଁ କୁଖାର ଦେହରେ ରକ୍ତ ଲାଗିଛି—ଖଣ୍ଡିଆ ଖାବରା ଚମ—ପିଠିରୁ ବାରପଣ ଲୋମ ଉପୁଡ଼ି ଗଲାଣି—ଚେଁ ଚେଁ ହୋଇ ପଛରେ ଗୁରିଠା କୁଆ ଗୋଡ଼ାଉଛନ୍ତି । କିଏ ରାସ୍ତାରେ ଶୋଇ ବେଳେବେଳେ କେଉଁଠି ଟିକିଏ ଧଉଡ଼ି କରି ଶାନ୍ତ ହେଲେ, ଆଖି ଟେକି ଅନାଉଛି, ତା'ପରେ ପୁଣି ମୁହଁ ମାଡ଼ି ପଡ଼ି ରହୁଛି । ଏଠି ତ ବାବୁ ଭାୟା ହାକମ ହୁକୁମା ନାହାନ୍ତି ଯେ, କୁକୁରଗୁଡ଼ାକ ରହିଲେ ଆପତ୍ତି କରିବେ । ମଣିଷ ଓ କୁକୁର, ମଶା, ମାଛି ଓ ନଳାପାଣି, ରୋଗ ଦାରିଦ୍ର୍ୟ, ଏ ସବୁକୁ ନେଇ, ଏ ଏକ ରାଜ୍ୟ । ତେଣୁ ଯେତେବେଳେ କୁକୁର ମାରିବାପାଇଁ ମ୍ୟୁନିସିପାଲଟିର କୁକୁର ବୁହା ଗାଡ଼ି ନେଇ ଅଗାଧୁ ମେହେନ୍ତର ଏଠାକୁ ଆସିଲା, ଠକର୍ ତାର ହାତଧରି ତାକୁ ନେହୁରା ହେଲା, କୁକୁରମାନଙ୍କୁ ଛାଡ଼ିଦେବାକୁ । ଅଗାଧୁ ରାଜି ନ ହେବାରୁ

କରୁ ଅଣ୍ଟାଗୁଞ୍ଜା ଦେବା ପର୍ଯ୍ୟନ୍ତ କଥାଗଲା । ଯାହାହେଉ, ବଚରାଗୁଡ଼ାକ ଅଗାଧୁ କବଳରୁ ବଞ୍ଚିଗଲାପରେ ଆଉ କୌଣସି ବିପଦ ପଡ଼ନାହିଁ । ସେମାନଙ୍କ ସଂଖ୍ୟା ନବ୍ରପଦରେ ବଢ଼ିବାରେ ଲଗିଛି ।

ରାସ୍ତାର କୁକୁର ପଲପରି ରାବଣାର ଛୁଆ ପିଲାଙ୍କ ସଂଖ୍ୟା ମଧ୍ୟ ବଢ଼ି ଚାଲିଛି । ଘର ବୋଲି ଗୋଟିଏ ବଖରା—ଚାଳ ଉପରେ ଠାଏ ଠାଏ କଣା—ବର୍ଷା ହେଲେ ତୁ ତୁ ପାଣି ଗଳେ । ଆଠଟି ପିଲାଙ୍କର ଷୋଳଟି ଆଖି ବର୍ଷା ଅନ୍ଧାର ରାତିରେ ଘରକଣରେ ଜୁଳୁ ଜୁଳୁ ହୁଏ, ଗଛ ଡାଳରେ ନେସି ହୋଇଥିବା ଜୁଳୁଜୁଳିଆ ପୋକପରି । ରାବଣାର ସ୍ତ୍ରୀ ହୀରା ଓଡ଼ିଆ ଘର ଝିଅ । କେଉଁ ମୁହୂର୍ତ୍ତରେ କିପରି ଦକ୍ଷିଣ ଦେଶର ରିକ୍ସା ବାଲା ରାବଣା ସହିତ ତାର ଭାବ ହେଲା ଓ ସେ ଦୁହେଁ କିପରି ଶିଖାଶିଖି ହୋଇ ପଳେଇ ଆସିଲେ, ସେ ବୃତ୍ତାନ୍ତ ବସ୍ତିର ଠେକରାଠାରୁ ବଳି ଭଲ କେହି ଜାଣନ୍ତି ନାହିଁ । ସେ ବହୁତ ଦିନ ତଳର କଥା । ବସ୍ତିର ଅନ୍ଧାରୁଆ ପାଣିଖାଲ ପରି ବିଗତ ଦିନର ଘଟଣା ପ୍ରତି ଦୃଷ୍ଟି ଦେବାକୁ ବା ସେକଥା ଭାଳି ବସିବାକୁ ରାବଣା କି ହୀରା କାହାକୁ ବେଳ ନାହିଁ । ବରହମ୍ପୁରର କେଉଁ ହୋଟେଲରେ ରାବଣା କପ୍ ପ୍ଲେଟ ସଫାକରୁଥିଲା, ହୀରା ଡେକ୍‌ଚି, କରେଇ, ହାଣ୍ଡି ସଫା କରିବାକୁ ସେଠି ଜୁଟିଲା । ସେତେବେଳେ ଦୁହେଁ ଦୁହିଁଙ୍କ ପ୍ରତି ଆକୃଷ୍ଟ ହେଲେ । କାହାକୁ ନ କହି ଦିନେ ହୋଟେଲରେ ଦୁହେଁ ଏକସଙ୍ଗେ ଅନୁପସ୍ଥିତ ରହିଲେ । ଅନ୍ୟ ଚାକର ବାକରମାନେ ଦି' ଚାରିଦିନ ଟୁପ୍ ଟାପ୍ ଫୁସ୍ ଫାସ୍ ହୋଇ, ଚୁପ୍ ହେଲେ । ପରେ ସେମାନେ କଟକରେ ଏମିତି ବସା ବାନ୍ଧିଛନ୍ତି । ସେମାନଙ୍କର ବି ବାପ ମାଆ ଥିଲେ, ଘର ଦୁଆର ଥିଲା । ହେଲେ କେହି ଦିନେ ସେମାନଙ୍କର ଖବର ନେଇ ନାହିଁ । ବିପଦ ଆପଦରେ ବା ସୁଖସମ୍ପଦରେ କେହି ସେମାନଙ୍କ ଭଙ୍ଗା କୁଡ଼ିଆ ଦୁଆରେ ପାଦ ପକେଇନ । ପଡ଼ୋଶୀ କହିଲେ, ମ୍ଲେଚ୍ଛା, କୁଷ୍ଠ-ରୋଗୀ ଘିନଆ ଓ ଅନ୍ଧବୁଢ଼ା ଭଜମନ । ସାହିବାଲା କହିଲେ ସହରର

ଯେତେକ ଦାଗୀ, କଂସେଇ, ଠକ, ନିଶାଖୋର ଓ ପକେଟ୍‌ମାରୁ। ଏଇମାନଙ୍କ ମେଳରେ କଟକର ଏକ ଅନ୍ଧାରୁଆ କୋଣରେ ରାବଣା ଓ ହୀରାଙ୍କ ସଂସାର।

ପ୍ରତି ବର୍ଷ ସେମାନଙ୍କ ପରିବାରର ସଂଖ୍ୟା ଗୋଟିଏ ଲେଖାଏଁ ବଢ଼ି ବଢି ଚାଲିଛି। ବାହାହେବାର ଦଶବର୍ଷ ଭିତରେ ଭଗବାନ୍ ସେମାନଙ୍କୁ ଆଠଟି ସନ୍ତାନ ଦେଇଛନ୍ତି। ବଡ଼ପୁଅ ଭେଙ୍କଟ୍ ରାହାଳୀକୁ ଯାଉଥିଲା— ଏବେ ବାପ ତାକୁ କେଉଁ ମାଲଗୋଦାମରେ ରଖେଇ ଦେଇଛି। ତା ତଳକୁ ତଳ ଝିଅ ଓ ଭଉଣୀଗୁଡ଼ିକ ଫୁରୁ ଫୁରୁ ମୁଣ୍ଡବାଳ, ମିଞ୍ଜି ମିଞ୍ଜି ନିସ୍ତେଜ ଆଖି, ହାଡ଼ ଧୂଡ଼ୁ ଧୂଡ଼ୁ ଦେହ। ସେମାନେ କୌଣସି କାମକୁ ନୁହନ୍ତି। ଦିନସାରା ଏଣେ ତେଣେ ବୁଲନ୍ତି କୁକୁରପଲପରି। ମାଆ ବୋଲି ସେଇ ଯେଉଁ ଦରବୁଢ଼ୀ ମାଇପିଟି, ତା ଉପରେ ସେମାନଙ୍କର ଷୋଳଅଣା ଅଧିକାର। ବାପ ପିଲାମାନଙ୍କୁ ମାରଧର କଲେ, ମାଆ ପିଲାମାନଙ୍କ ପକ୍ଷରୁ ବାପ ସଙ୍ଗେ କଳି କରେ। ମାଆକୁ ବି ବାପ ବେଳେ ବେଳେ ନିର୍ଦ୍ଦୟ ଛେଚେ। ହୀରା, ଘଡ଼ିଏ ପହରେ, କୁଡ଼ିଆ ଘରେ ସୁକୁସୁକୁ ହୋଇ ପୁଣି ପିଲାଙ୍କ ଜଞ୍ଜାଳ ଭିତରେ ନିଜକୁ ଭୁଲିଯାଏ। ଗୋଟାଏ ଛୁଆ ତୁଣ୍ଡରେ ମୁହଁ ଲଗାଇ ବଞ୍ଚି ରହିବାର ସଂଗ୍ରାମ କଲାବେଳେ ଆଉ ଦୁଇଟା ଭୂଇଁରେ ପଡ଼ି କଟାଳ କରନ୍ତି ଭୂଜା ଖାଇବାକୁ। ସାରାଦିନର ମେହେନତ୍ ପରେ ରାବଣାର ରୋଜଗାର ଟଙ୍କାଏ କି ଚଉଦଅଣା। ସେଇଥିରେ ଏତେ ବଡ଼ କୁଟୁମ୍ବ ଚଳିବା କଥା। ପୁଣି ରାବଣାର ନିଶାପାଣି ତ ଅଛି। ବେଳକୁ ବେଳ ଅଭାବ ବଢ଼ିଲା।

ଅଭାବ ବଢ଼ିବା ସଙ୍ଗେ ସଙ୍ଗେ ରାବଣାର ପ୍ରକୃତି ମଧ୍ୟ ବଦଳିଗଲା। ହେଇ ସେଦିନ ସଞ୍ଜବେଳେ ରିକ୍‌ସାଟା ଦାଣ୍ଡ ଦୁଆରେ ଥୋଇ ରାବଣା ମସିଆ ଗାମୁଛାଟାରେ ଦେହରୁ ଝାଳ ପୋଛୁଛି, ସାନଝିଅ ରାଜମ୍ମା ଏଣ୍ଡକ-

ବେଳେ ବାପା ପିଠିରେ ଲଦ୍ଧ ହୋଇ ବାପାଲେ ମୋ ପାଇଁ କଣ୍ଢେଇ ଆଣି ଦେ କହିବାରୁ, ରାବଣା ତାକୁ ବ୍ରହ୍ମ ଗୃପୁଡ଼ାଏ ଦେଲା ଯେ, ପିଲାଟା ଭୋଭୋ ରଡ଼ି କରି ସେଠୁ ପଳାଇଲା । ଆଉ ଦିନେ ସେମିତି କିଛି କଥା ନାହିଁ— ରାବଣା ବସି ଭାତ ଖାଉଛି, ସ୍ତ୍ରୀରୀ କହିଲା କେମିତି ନିଶା ଖରଚରେ ଅଧେ ପଇସା ଯାଉଛି ଏବଂ ଏଇ କଥାରେ ରାଗିଯାଇ ରାବଣା କଂସା ଗିନା ଦି'ଟା ଫିଙ୍ଗିଦେଇ ଉଠିଗଲା ଯେ, ଆଉ ଦି'ଦିନ ଯାଏ ଘରେ ଭାତ ଖାଇଲାନାହିଁ କି ଘରକୁ ପଇସା ପାହୁଲଟାଏ ଦେଲାନି । ଏଣେ ପିଲାଗୁଡ଼ିକ ଭୋକରେ ଦରମଲା ହେଲେ ।

ଆଜି ରାତି ଦଶଟା ଯାଏ ରାବଣା ଫେରିନି । ପିଲାଗୁଡ଼ିକ କନ୍ଥା ଓ ଛିଣ୍ଡା ଅଖା ପକାଇ ପାଖକୁ ପାଖ ଲଗାଲଗି ହୋଇ ଶୋଇ ପଡ଼ିଲେଣି । ଶୀତ ଦିନଟା । କବାଟ ଫାଙ୍କରେ ଜହ୍ନ ଆଲୁଅ ଗୋଟାଏ ଧଳା କୁହୁଡ଼ିର ଗୃଦର ପରି ଝୁଲି ରହିଛି । ଅନ୍ଧାରୁଆ ଗଛବୁଦା ମୂଳରେ କେହି ଛପି ବସିଲା ପରି ଜଣା ପଡ଼ୁଛି । ବେଳେ ବେଳେ କୁକୁର ଦୁଇଟା ବାଦ-ବୁଦିଆ ହେଲାପରି ସେମାନଙ୍କ ସରୁ ସ୍ୱର ମେଲିଇ ଦେଉଛନ୍ତି ।

ସ୍ତ୍ରୀରୀ ଭାବୁଚି, ତା ସ୍ୱାମୀ ଆଗେ ଏମିତି ନ ଥିଲା । କେତେ ସୁନ୍ଦର ମିଠା ମିଠା କଥା, ତାର ମୁହଁରେ ହସ । ଏବେ ସେ ସବୁ କୁଆଡେ଼ ଗଲାଣି ଆଜିକାଲି କଥାରେ କଥାରେ ଅଭଦ୍ର ଭାଷା—ଟିକିଏ କ'ଣ ହେଲେ ରାଗି-ଯାଇ ବିଧା ଗୋଇଠା ବୃଷ୍ଟି । ଏହାର କାରଣ କ'ଣ ?

ଅଭାବ—ଅଭାବ !! ବେଳକୁବେଳ ଅଭାବ ବଢ଼ି ଗୃଲିଛି । ଗୃଉଳ ସେର ଚଉଦଣା । ରାବଣାର ସାରା ଦିନର ମେହନତର ଦାମ ବି ଚଉଦଣା । ସେଥିରୁ ପୁଣି ଛଅଣା ଯିବ ନିଶାରେ । ସାନ ଝିଅଟାକୁ ତିନିଦିନ ହେଲା ଜର । କୋଳପୋଛା ପୁଅକୁ ଅଇଣ୍ଠିଆ । ଦିନକୁ

ଦିନ ସେ ନଳିତା ତାଙ୍କ ପରି ଶୁଖିଶୁଖି ଯାଉଛି । ଚୂଡ଼ା ଖଇ ତା ପେଟରେ ଯାଉନି । ଆଜି ପିଲାଗୁଡ଼ିକ ରାତିରେ ଉପାସ ଶୋଇଲେ । ଏବେ କେତେ ଦିନ ହେଲା, ହୀରା ପିଲାମାନଙ୍କୁ ରୋଜଗାରର ଏକ ନୂଆ ପନ୍ଥା ଶିଖାଇ ଦେଇଛି । କାଠଯୋଡ଼ି ବନ୍ଧ ପାଖରେ ସେମାନେ ବୁଲି ବୁଲି ବାବୁମାନଙ୍କୁ ପଇସା ମାଗୁଛନ୍ତି । ହୀରା କହିଛି, ଜଣେ ବାବୁଙ୍କୁ ସମସ୍ତେ ମାଗିବ ନାହିଁ । ବାବୁ ମନାକଲେ ବି ତାଙ୍କ ପଛେ ପଛେ ଧାଇଁବ । ରିକ୍ସା ପଛେ ପଛେ ଗୋଡ଼ାଇ ଚିତ୍କାର କରିବ । ତା ହେଲେ ଦୟାକରି କେହି ପଇସାଟାଏ ଫିଙ୍ଗି ଦେବେ । ପିଲାଏ ସେଇଆ କରୁଛନ୍ତି; ତଥାପି ପେଟପୂରା ଗଣ୍ଡାଏ ଖାଇବାକୁ ମିଳୁନି ।

ରାବଣା କହୁଥିଲା, କିଛି ଗୋଟାଏ ବ୍ୟବସ୍ଥା ନ କଲେ, ଆଉ ଚଳାହେବ ନାହିଁ । ହୀରା ବି ସେଇଆ ଭାବୁଛି, ମାତ୍ର କ'ଣ କରିବ, ସେତ ମାଇଁକି ଲୋକ । ମାଟି କାମ କରିବାକୁ ତା ଦେହରେ ବଳ ନାହିଁ - ଘରେ ଆଠ ଆଠଟା ପିଲା । ପୁଣି ସେ ଗର୍ଭବତୀ ।

ଏମିତି କେତେ କ'ଣ ଭାବି ଭାବି କେତେବେଳେ ସେ ଶୋଇ ପଡ଼ିଲା । ନିଦ ଭାଙ୍ଗିଲାବେଳକୁ ରାବଣା ତନ୍ଦ ଭଣଭଣ ମୁହଁଟାକୁ "ବିକଟାଳ କରି କଅଁଳେଇ କହୁଛି, କ'ଣ ରଖିଚୁ, ଖାଇବାକୁ ଦେ ।"

ପ୍ରକୃତିସ୍ଥ ହୋଇ ହୀରା ସ୍ୱାମୀ ଆଗରେ ଟିଣ ଥାଳିରେ ଭାତ ଓ ତାମ୍ପଡ଼ା ଶୁଖୁଆ ଖୋଳ ଥୋଇଲା । ପିଲାଏ ପଛେ ଉପାସ ଶୁଅନ୍ତୁ, କିନ୍ତୁ ରାବଣାର ଖାଇବା କମ୍ ହେଲେ ସ୍ତ୍ରୀକୁ ସେ ପିଟି ପିଟି ସାବାଡ଼ କରିଦେବ । ଗାଉଁ ଗାଉଁ ଭାତ ଗିଳିଲାବେଳେ ଉପାସରେ ସଢୁଥିବା ପିଲାମାନଙ୍କ କଥା କେବେ ରାବଣାର ମନକୁ ଆସେନାହିଁ ।

ରାବଣା ଭାତଖାଇ ବସିଲା । ପାଖରେ ବସି ହୀରା ସ୍ୱାମୀର ଭାତଖିଆ ଦେଖୁଥାଏ । ଆଜ କାହିଁକି ରାବଣା ବଡ଼ ହସ ହସ ଜଣା ପଡ଼ୁଥାଏ । କଥା ଛଳରେ ସ୍ତ୍ରୀକୁ କହିଲା, "ଗୋଟେ ନୂଆ ପନ୍ଥା ପାଇଛି, ତୁ ଆଉ ଭୟ କରନା । ଏଣିକି ଅଭାବ ରହିବନାହିଁ ।"

ଅଭାବ ରହିବ ନାହିଁ ଶୁଣି ହୀରା ବୋକାଙ୍କ ପରି ଥରେ ସ୍ୱାମୀ ମୁହଁକୁ ଓ ଥରେ ଉପାସରେ ଶୋଇପଡ଼ିଥିବା ପିଲାମାନଙ୍କୁ ଚାହିଁଲା । କେଡ଼େ ବୀଭତ୍ସ ରାବଣାର ମୁହଁ—କେଡ଼େ କୁଟିଳ ତା ଆଖିର ଚାହାଣୀ । କଳାକଳା ଦାନ୍ତ ଦେଖାଇ ସେ ଥରେ ଦୁ'ଥର ଖୁବ୍ ବଡ଼ ପାଟିରେ ହସିଲା— "ଏଣିକି ନୂଆ ବାଟ ପାଇଛି, ଆଉ ଅଭାବ ରହିବନାହିଁ ।"

ରାବଣା ଖାଇ ସାରିବା ପରେ ସ୍ୱାମୀ ସ୍ତ୍ରୀ ଶୋଇବାକୁ ଗଲେ, ସେଦିନେବି ମଶିଣା ଉପରେ ହୀରା ସଙ୍ଗେ ସଙ୍ଗେ ଶୋଇ ଘୁଙ୍ଗୁଡ଼ି ମାରିଲା; କିନ୍ତୁ ରାବଣା ଶେଯରୁ ଉଠି କବାଟ ମେଲିଇ ଠିଆ ହୋଇ ବିଡ଼ି ଖାଇବାକୁ ଲାଗିଲା । ବାହାରେ ନିଶୂନ୍ ଜହ୍ନରାତି, ମଶାମାନଙ୍କ ଗୁଣୁଗୁଣୁ ଓ ଗଛଡ଼ାଳରେ ବେଳେ ବେଳେ ପେଚା ବା ଅନ୍ୟ ଚଢ଼େଇମାନଙ୍କର ଡେଣା ଫଡ଼୍ ଫଡ଼୍ କରିବାର ଶବ୍ଦ । ରାବଣାର ସେଥିପ୍ରତି ଲକ୍ଷ୍ୟ ନଥିଲା । ବିଡ଼ିର ନେଳଧୂଆଁ ର କୁଣ୍ଡଳୀ ପରି ତା ମନ ଭିତରେ ଗୁଡ଼ାଏ ଭାବନା ଅଡ଼େଇ ଚଡ଼େଇ ହେଲା । ବିଚଳିତ ହେଲା ପରି ରାତି ସାରା ସେ ତା କୁଡ଼ିଆ ସାମନାରେ ଏ ପଟ ସେପଟ ହେବାକୁ ଲାଗିଲା ଏବଂ ସେଇ ବିଦେଶୀ ହ୍ୱାନ୍ ଚୁଷ୍ଟାମ ନିଶୁଆ ଡେଙ୍ଗା ମଣିଷଟି, ଯାହା ସଙ୍ଗେ ଆଜ ସଞ୍ଜବେଳେ ସେ ଅନେକ ସମୟ ଧରି କଥାବାର୍ତ୍ତା ହୋଇଥିଲା, ତାହାରି କଥା ହିଁ ବାରମ୍ବାର ଭାବିବାକୁ ଲାଗିଲା ।

ଭାବି ଭାବି କେତେବେଳେ ରାବଣାର ଦେହ ଶୀତେଇ ଉଠିଲା, କେତେବେଳେ ଆଖିରୁ ଦୁଇଟୋପା ଗରମ ଲୁହ ବୋହି ଆସିଲା,

କେତେବେଳେ ବା ପାଗଳଙ୍କ ପରି ସେ ଓଠ ମେଲାଇ ହସିବାକୁ ଚେଷ୍ଟା କଲା । ଅନ୍ଧାର ରାତିରେ ରାବଣାର ଏତେ ଚିନ୍ତା ପ୍ରତିଚିନ୍ତା କେହି ଜାଣିଲେ ନାହିଁ ।

ତା ପରଦିନ ସକାଳୁ ସେ ସ୍ତ୍ରୀକୁ ଖୁବ୍ ନରମ ଭାଷାରେ କହିଲା, "କିଷ୍ଟା ଆଜି ମୋ ସଙ୍ଗେ ସହର ବୁଲିଯିବ ।" ବାପ କଥା ଶୁଣି କିଷ୍ଟା ନାଚି ଉଠିଲା । ଅନ୍ୟ ଭାଇ ଭଉଣୀମାନେ ବାପ ସଙ୍ଗେ ଅଳି କଲେ, "ମୁଁ ଯିବି—ମୁଁ ଯିବି ।" କିନ୍ତୁ କେବଳ ପୁଅ କିଷ୍ଟା ବାପର ରିକ୍ସାରେ ବସି ସହରକୁ ଗଲା । ସ୍ୱାମୀର ଆଜି ଏମିତି ଖିଆଲ ଦେଖି ସ୍ତ୍ରୀକୁ ହସ ଲାଗିଲା । ଭାବିଲା, ନିଶାଖୋର ମଣିଷ—କେତେବେଳେ କଣ ଝୁଙ୍କ ଉଠୁଛି, ପିଲାଟା ବାପ ସଙ୍ଗେ ଯାଇ ସହରରେ ବୁଲିଆସୁ—ବଡ଼ ହେଲେ ତ ବାପପରି ରିକ୍ସା ଟାଣିବ, କି ଯେଉଁଠି କୁଲିଗିରି କରିବ । ବାବୁଙ୍କର ପୁଅ ନୁହେଁ ଯେ ଦିନ ମହଲା କୋଠାଘରେ ଗୋଡ଼ ଉପରେ ଗୋଡ଼ ପକାଇ ଅଫିସ କରିବ । ବଡ଼ପୁଅ ଭେଙ୍କଟ୍ ମାଲ ଗୋଦାମରେ କାମ କଲାଣି, ତା ତଳକୁ ଗୋଟିଏ ମରିବାପରେ ଏଇ କିଷ୍ଟା—ଆଠ ବରଷର ପୁଅ । ଅନ୍ୟ ପିଲାଙ୍କ-ଠାରୁ ଏ ପିଲାଟିର ଗଢ଼ଣ ଭଲ । ଦେଖିବାକୁ ବି ଟିକିଏ ମୋଟା ମୋଟି—ବୁଢ଼ାଙ୍କ ପରି ରହି ରହି କଥା କହିଲାବେଳେ ଶୁଣିବାକୁ ବେଶ୍ ଭଲଲାଗେ ।

ସେ ଦିନ ଖରାବେଳେ ରାବଣା ଘରକୁ ଖାଇବାକୁ ଆସିଲା ନାହିଁ । ସ୍ତ୍ରୀର ମନରେ କଷ୍ଟ ହେଲା କିଷ୍ଟା ବାପ ସଙ୍ଗେ କେଉଁଠି କଣ ଖାଇଥିବ । ମାଆ ନ ଖୋଇଲେ ସେ ଖାଏନାହିଁ । ଅନ୍ୟ ସାନ ଭାଇ—ଭଉଣୀମାନେ ବି ମାଆସଙ୍ଗେ ଲଗାଇଛନ୍ତି—କିଷ୍ଟା କୁଆଡ଼େ ଗଲା ? କେତେବେଳେ ଆସିବ ? ବାପ ଆମକୁ ସହର ବୁଲାଇ ନେଉନାହିଁ କାହିଁକି ?

ହୀରା ପିଲାଙ୍କୁ ବୋଧ ଶୋଧ କରଦେଲା—"ହଁ ତୁମମାନଙ୍କ ବ ବାପ ସହରକୁ ନେବ ।" ପିଲାଏ ଠିକଏ ଥୟ ଧଇଲେ; କନ୍ତୁ ସଞ୍ଜ ଯାଇ ରାତ ଘଡ଼ଏ ହେଲା । ତଥାପି ରାବଣାର ଦେଖାନାହିଁ । ହୀରା ମନକୁ ପାପ ଛୁଇଁଲା । ସ୍ୱାମୀ ଯେତେବେଳକୁ ଆସିଲେ ଆସୁ—ଚନ୍ତା ନାହିଁ—ମାତ୍ର ଆଠ ବରଷର ଗେଲ୍ହଠ ପୁଅଟି କୁଆଡ଼େ ବୁଲୁଚ ବାପ ସଙ୍ଗେ । ଇଏ ତ ନଶାଖୋର ଲୋକ । କୋଉଠି ଗୁଲଖଟିରେ ବସିଥିଲେ ରାତ ପାହିଯିବ । ଘରକଥା ପଚ୍ଛରେ କଏ ? ହେଲେ, ପିଲାଟା ବକଳ ହେବଣି ।

ହୀରା ସକାଳୁ କଚ୍ଛ ଖାଇନ । ପିଲାମାନେ ସଞ୍ଜ ବୁଡ଼ୁ ବୁଡ଼ୁ ଖାଇ ଶୋଇଲେଣି । କବାଟକୁ ଆଉଜ ସେମିତ ସେ ପଥର ମୂର୍ତ୍ତିଟି ପରି ବସିଛୁ । କାନ ଡେରିଛୁ—କଏ କେତେ ଯାଉଛନ୍ତ ଆସୁଛନ୍ତ । କବାଟ ମେଲାଇ ଚାହୁଁଚ—ବୁଢ଼ା ଭଜମନ, ଚକରା, ମାଧି, ସମସ୍ତେ ଫେରିଲେଣି । ଏପରିକ ରାତ ଅଧରେ ପୁରୀ ଆଡ଼ୁ ଅସୁଥିବା ରେଲ ଗାଡ଼ିଟା ବ କେତେବେଳୁ ଚାଲି ଗଲାଣି; ତଥାପି ସ୍ୱାମୀ ଓ ପୁଅର ଦେଖାନାହିଁ ।

ଏମିତ କେତେବେଳେ ନୀରବ ନଶ୍ଚଳ ହୋଇ ବସି ରହିବାପରେ ହଠାତ୍ ଭୁସ୍‌କର ଦୁଆରଟା ମେଲାଇ ରାବଣା ଘରଭିତରକୁ ପଶି ଆସିଲା, ଏବଂ ଠିକ୍ ସେତକବେଳେ ଚଲ୍‌ଚହ କୁକୁର ଭୋ ଭୋ ରଡ଼ିକର କାଠଯୋଡ଼ ବନ୍ଧ ଆଡ଼େ ଧାଇଁ ପଳାଇଲେ । ଚମକ ପଡ଼ ପିନ୍ଧିବା ଲୁଗାଟା ସମ୍ଭାଳ ନେଇ ହୀରା ବଳବଳେଇଲାପରି କହି ଉଠିଲା; "ମୋ କିଷ୍ଟା ?"

କନ୍ତୁ ମିଞ୍ଜି ମଞ୍ଜି ଫପ ଆଲୁଅ ଆଗରେ ଏକ ପ୍ରକାଣ୍ଡ ଗୁଇ ପରି କେବଳ ରାବଣାହିଁ ଠିଆ ହୋଇଥିଲା । କ୍ଷଣକପରେ ଘରଭିତରେ ଆଖି ବୁଲାଇ ଗୁଳବନ୍ଧା ହରିଣୀ ପରି ହୀରା ଚିତ୍କାର କରି ଉଠିଲା—"କିଷ୍ଟା ?"

ରାବଣା ହସିଲା । ଆଖି ଦୁଇଟା ତାର ରକ୍ତ ପରି ଲାଲ । ମଦ ଖାଇଛି ବୋଧହୁଏ । ମ୍ନାର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ ହାତରେ ଧରିଥିବା କନା ଥଳରୁ ଝଣଝଣ କରି ମୁଠା ମୁଠା ଚକ୍ ଚକ୍ ରୁପାଟଙ୍କା ଭୂଇଁ ଉପରେ ଅଜାଡ଼ି ଦେଲା ।

ଆଖି ଦୁଇଟି ତାଳୁରେ ଖୋସି ଦେଇ ପୁଣି ଥରେ ମ୍ନାର ଚତ୍କାର କଲା, "ମୋ ହିଷ୍ଣା କାହିଁ ?"—ଏକ ତାଚ୍ଛଲ୍ୟ ଭରା କୁତ୍ସିତ ହସ ହସି ରାବଣା ଆଞ୍ଜୁଳାକ ଟଙ୍କା ଆଣି ମ୍ନାର ମୁହଁ ପାଖରେ ଦେଖାଇଲା ଓ ତାର ଦାଢ଼ିମୟ ଦୁର୍ଗନ୍ଧ ମୁହଁଟା ଏକ ବିକୃତ ଆନନ୍ଦରେ ଆହୁରି ଭୟଙ୍କର ହୋଇ ଉଠିଲା ।......

———

# ଗାଳ୍ପିକ ପରିଚୟ

## ବ୍ୟାସକବି ଫକୀର ମୋହନ ସେନାପତି

୧୮୪୩ ରେ ବାଲେଶ୍ୱରରେ ଜନ୍ମ, ମୃତ୍ୟୁ ୧୯୧୮ ରେ । ଓଡ଼ିଆ ଗଳ୍ପ, ଉପନ୍ୟାସର ଜନକ । ଦୁଇଟି ଭାଗରେ ପ୍ରକାଶିତ "ଗଳ୍ପସ୍ୱଳ୍ପ" ତାଙ୍କର ଗଳ୍ପ ସଙ୍କଳନ । ଉତ୍ତର ବୟସରେ ଲେଖାଲେଖି ଆରମ୍ଭ କରି, ତାଙ୍କର କର୍ମମୟ ଜୀବନରେ ବହୁ ଅନୁଭୂତି, ଅଭିଜ୍ଞତା ଓ ପର୍ଯ୍ୟବେକ୍ଷଣକୁ ସେ ଲେଖା ଭିତରକୁ ଆଣିଛନ୍ତି । ସମାଜ ସଂସ୍କାର ଗଳ୍ପଗୁଡ଼ିକର ଆପାତ ପ୍ରତୀୟମାନ ଉଦ୍ଦେଶ୍ୟ ହେଲେ ମଧ୍ୟ, ଅନ୍ୟାନ୍ୟ ବହୁ ଆଧୁନିକ ଦୃଷ୍ଟିକୋଣରୁ ତାଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକ ପ୍ରତ୍ୟେକ ସାର୍ଥକ ସୃଷ୍ଟି । ସଜୀବ ଚରିତ୍ର, ସ୍ଥାନକାଳପାତ୍ରାନୁରୂପ ଭାଷା, ଆଗ୍ରହ ସୃଷ୍ଟି କରି ପାରୁଥିବା ପ୍ରସଙ୍ଗ ଯୋଗୁଁ ତାଙ୍କ ଲେଖା ସବୁକାଳେ ପାଠକମାନଙ୍କଦ୍ୱାରା ଆଦୃତ ।

## ପଦ୍ମଭୂଷଣ ଡକ୍ଟର କାଳନ୍ଦୀ ଚରଣ ପାଣିଗ୍ରାହୀ

୧୯୦୧ରେ ପୁରୀର ବିଶ୍ୱନାଥ ପୁରରେ ଜନ୍ମ । ଲେଖକ ତାଙ୍କର ଦୀର୍ଘ ଜୀବନରେ ସାହିତ୍ୟ ସାଧନାରେ ଅବିରତ ବ୍ରତୀ ରହି, ବହୁ ଉପନ୍ୟାସ କ୍ଷୁଦ୍ରଗଳ୍ପ, ପ୍ରବନ୍ଧାଦି ଲେଖିଛନ୍ତି । 'ସାଗରିକା'; 'ଶେଷରଶ୍ମି', 'ମୋ କଥାଟି ସରିନାହିଁ', 'ଗଣ୍ଡି ଫଳ', ପ୍ରଭୃତି ତାଙ୍କର ବହୁ ପ୍ରସିଦ୍ଧ ଗଳ୍ପ ସଙ୍କଳନ । "ଅଙ୍ଗେ ଯାହା ନିଭାଇଛି" ତାଙ୍କର ସ୍ୱ-ରଚିତ ଆତ୍ମ-ଜୀବନୀ ଗ୍ରନ୍ଥ । ତାଙ୍କର ସାହିତ୍ୟ ସାଧନାର ସ୍ୱୀକୃତି ରୂପେ ସେ କେନ୍ଦ୍ରୀୟ

ସାହିତ୍ୟ ଏକାଡେମୀର 'ଫେଲୋ' ରୂପେ ମନୋନୀତ ହୋଇଛନ୍ତି ଓ ଭାରତ ସରକାରଙ୍କଦ୍ୱାରା ପଦ୍ମଭୂଷଣ ପଦବୀରେ ଭୂଷିତ ହୋଇଛନ୍ତି । ଫକୀର ମୋହନଙ୍କ ସମାଜ ଚେତନା ଏହାଙ୍କ ଲେଖାରେ ଦେଖିବାକୁ ମିଳେ । ତା ଛଡ଼ା ବ୍ୟକ୍ତି ଚେତନା—ବ୍ୟକ୍ତିର ମାନସ ଓ ଆତ୍ମାନ୍ୱେଷଣକୁ ଦିବାର ପ୍ରୟାସ—ଏହାଙ୍କ ବହୁ ଲେଖାରେ ପାଠକ ପାଏ । ଗଳ୍ପର ବିଷୟ ଓ ଭାଷା ନିର୍ବାଚନରେ ଲେଖକଙ୍କ ବେଶୀ ଭାବନା ପ୍ରେରିତ । ଅନେକ ଗଳ୍ପ ପଢ଼ିଲେ ପାଠକ ନିଜର ଜାଗ୍ରତ ଆବେଗକୁ ସଞ୍ଚିତ କରିବା ଅସମ୍ଭବ ହୋଇ ପଡ଼େ । ଭାରତର ସ୍ୱାଧୀନତା-ସଂଗ୍ରାମ-କାଳୀନ ବହୁ ଚିତ୍ର ଏହାଙ୍କ ଲେଖାରେ ଦେଖିବାକୁ ମିଳେ ।

## ଶ୍ରୀ ଗୋପୀନାଥ ମହାନ୍ତି

୧୯୧୪ରେ କଟକର ନାଗବାଲିରେ ଜନ୍ମ । ଉଚ୍ଚ ସରକାରୀ କର୍ମଚାରୀ ଥାଇ ମଧ୍ୟ—ଉଭୟ ଗୁଣ ଓ ପରିମାଣ ଦୃଷ୍ଟିରୁ—ସେ ପର୍ଯ୍ୟାପ୍ତ ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧ ଲେଖିଛନ୍ତି । "ଗୁଇ ଆଳୁଅ" ତାଙ୍କର ଏକ ପ୍ରସିଦ୍ଧ ଗଳ୍ପ ସଙ୍କଳନ । ସ୍ୱାଧୀନୋତ୍ତର ଓଡ଼ିଶାରେ ସରକାରୀ କର୍ମଚାରୀମାନଙ୍କ ଅଭିଜ୍ଞତା, ସେମାନଙ୍କ ମଧ୍ୟରେ ପ୍ରତିଯୋଗିତା, ନିଷ୍ଠୁରତା, ସାଧାରଣ ଜୀବନରେ ମୂଲ୍ୟଶୂନ୍ୟତା, ତାଙ୍କର ବହୁ ଗଳ୍ପର ବିଷୟ । ଓଡ଼ିଆ ଭାଷାର ଏକ ନିଜସ୍ୱ ପ୍ରୟୋଗକରି ତାର ଶକ୍ତି ଓ ବୈଭବକୁ ଲୋକଲୋଚନ ସମ୍ମୁଖକୁ ଆଣିବାକୁ ସତତ ଯତ୍ନଶୀଳ । ଏକାନ୍ତ ନିଷ୍କପଟ ଆର୍ଟିଷ୍ଟ । କେନ୍ଦ୍ରୀୟ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଛନ୍ତି । ଭାରତର ସର୍ବଶ୍ରେଷ୍ଠ ଭାରତୀୟ ଜ୍ଞାନପୀଠ ପୁରସ୍କାର ମଧ୍ୟ ପାଇଛନ୍ତି । ଲେଖାରେ ପୌନଃପୌନିକତା ଓ ବର୍ଣ୍ଣନା ବହୁଳତା ବେଳେ ବେଳେ ଦେଖାଯାଏ ।

## ଶ୍ରୀ ସୁରେନ୍ଦ୍ର ମହାନ୍ତି

୧୯୨୨ରେ କଟକର ପୁରୁଷୋତ୍ତମ ପୁରରେ ଜନ୍ମ । ବର୍ତ୍ତମାନ ପାର୍ଲିମେଣ୍ଟର ସଭ୍ୟ । ଏକାଧାରରେ ରାଜନୈତିକ ନେତା ଓ ସାହିତ୍ୟିକ ।

ସିଧା ସଳଖ ସ୍ୱାଧୀନୋତ୍ତର ଭାରତୀୟ ରାଜନୀତିରେ ସମ୍ପୃକ୍ତ ଥାଇ ସେ ତଥାକଥିତ ବହୁ ସଫଳତା ପଛରେ କେବଳ ପ୍ରଚାର ଓ ଆସନ ପ୍ରତିଷ୍ଠା ପାଇଁ ପ୍ରୟନ୍ନ ଦେଖି ପାରିଛନ୍ତି । ସମାଜ ଓ ବ୍ୟକ୍ତି—ଉଭୟ ପ୍ରକାର ସଚେତନତା—ଏହାଙ୍କ ଗଳ୍ପରେ ଦେଖିବାକୁ ମିଳେ । ଗଳ୍ପପାଇଁ ପ୍ରୟୋଜନ ସଜୀବ ପରିବେଶ ସୃଷ୍ଟି କରିବାରେ, ଗଳ୍ପରେ ବହୁ ଚିତ୍ରକଳ୍ପ ଓ ଉପମା ପ୍ରୟୋଗରେ ଏବଂ ଚରିତ୍ରାନୁରୂପ ଭାଷା ବିନ୍ୟାସରେ ସେ ଧୁରନ୍ଧର । ଆଧୁନିକ ସଭ୍ୟତା ପ୍ରତି ବିତୃଷ୍ଣ ହୋଇ ଲେଖକଙ୍କ ଦୃଷ୍ଟି ଇତିହାସାଭିମୁଖୀ ବୌଦ୍ଧକାଳୀନ ବିଷୟ ନେଇ ଗଳ୍ପ ଲେଖିବାରେ ସୁନାମ ଅର୍ଜିଛନ୍ତି । 'କୃଷ୍ଣଚୂଡ଼ା', ମହା ନିର୍ବାଣ,' 'ମଙ୍ଗଳର ମୃତ୍ୟୁ', 'ଦୁଇ ସୀମାନ୍ତ', 'ଓ କାଲକାଟା' ଏହାଙ୍କର କେତୋଟି ପ୍ରସିଦ୍ଧ ଗଳ୍ପ ସଙ୍କଳନ । କେନ୍ଦ୍ର ଓ ପ୍ରାଦେଶିକ—ଉଭୟ ସାହିତ୍ୟ ଏକାଡ଼େମୀଦ୍ୱାରା ପୁରସ୍କୃତ ।

## ମହାପାତ୍ର ନୀଳମଣି ସାହୁ

୧୯୨୬ରେ କଟକର ନିଆଳିରେ ଜନ୍ମ । ବର୍ତ୍ତମାନ ଓଡ଼ିଶା ସରକାରଙ୍କ ଲୋକ ସମ୍ପର୍କ ବିଭାଗର ସମ୍ପାଦକ । 'ସୁମିତ୍ରାର ହସ', 'ବିଷ୍ଣୁମାୟା', 'ରାନୁ ଅପାଠାରୁ ପୁଷି ପର୍ଯ୍ୟନ୍ତ' ଓ 'ଅନ୍ଧ ରାତିର ସୂର୍ଯ୍ୟ' ତାଙ୍କର ପ୍ରସିଦ୍ଧ ଗଳ୍ପ ସଙ୍କଳନ । ବ୍ୟଙ୍ଗ ବିଦ୍ରୂପ କରି, ସମାଜ ଓ ବ୍ୟକ୍ତି ଚେତନାରେ, ତାଙ୍କ ଆଦର୍ଶାନୁଯାୟୀ ସଂଶୋଧନ କରିବା ଲେଖକଙ୍କର ଲକ୍ଷ୍ୟ । ବ୍ୟଙ୍ଗ ଭିତରେ ମଧ୍ୟ ଚରିତ୍ରଗୁଡ଼ିକ ପ୍ରତି ଗଭୀର ସହାନୁଭୂତି ତାଙ୍କର ଲେଖାଗୁଡ଼ିକୁ ଆଧ୍ୟାତ୍ମିକତାର ସ୍ତରକୁ ନେଇ ଯାଇଥାଏ । ଚରିତ୍ରାନୁରୂପ ଭାଷା ସଂଯୋଜନାରେ ଏହାଙ୍କର ମଧ୍ୟ ଦକ୍ଷତା ରହିଛି । ଗଳ୍ପର ଶୈଳୀରେ ବିଶେଷ ପ୍ରୟୋଗାତ୍ମକ ପରୀକ୍ଷାନିରୀକ୍ଷାର ଅଭାବ ପରିଲକ୍ଷିତ ହୁଏ । ପ୍ରଗଲ୍‌ଭତା ତାଙ୍କ ଗଳ୍ପଗୁଡ଼ିକର ଆଉ ଏକ ଦୁର୍ବଳତା ।

## ଶ୍ରୀ ଚନ୍ଦ୍ରଶେଖର ରଥ

୧୯୨୯ ମସିହାରେ ବଲାଙ୍ଗୀରରେ ଜନ୍ମ । ବର୍ତ୍ତମାନ ଟିଟିଲାଗଡ଼ ଡ଼. ଏ. ଭି. କଲେଜର ଅଧକ୍ଷ । ଓଡ଼ିଆ, ଇଂରାଜୀ ଓ ସଂସ୍କୃତ ସାହିତ୍ୟରେ ଗଭୀର ପ୍ରବେଶ ଅଛି । ଓଡ଼ିଶାର ମୁଖ୍ୟ ସାହିତ୍ୟିକ ପତ୍ରିକାଗୁଡ଼ିକରେ ତାଙ୍କର ରମ୍ୟରଚନା ଓ କ୍ଷୁଦ୍ରଗଳ୍ପ ପ୍ରକାଶିତ ହୋଇଛି । ତାଙ୍କର ଗଳ୍ପ-ଗୁଡ଼ିକ କୌଣସି ଘଟଣାଖଟଣି ନୁହେଁ, ଜୀବନର କିଛି ଅଂଶର ଚିତ୍ରଣ କରି, କୌଣସି ବିଶେଷ ଚରିତ୍ରର ଉପସ୍ଥାପନାହିଁ ତାଙ୍କର ଉଦ୍ଦେଶ୍ୟ । ଗଳ୍ପ ଗୁଡ଼ିକୁ ସତ୍ୟାଭାସ ଦେବାରେ ତାଙ୍କର ଏହି ଶୈଳୀ ବିଶେଷ ସହାୟକ ହୁଏ ।

## ଶ୍ରୀମତୀ ନନ୍ଦିନୀ ଶତପଥୀ

୧୯୩୦ରେ କଟକ ସହରରେ ଜନ୍ମ । ପୂର୍ବତନ କେନ୍ଦ୍ର ସରକାରଙ୍କର ତଥ୍ୟ ଓ ବେତାର ବିଭାଗର ଷ୍ଟେଟ୍ ମନ୍ତ୍ରୀ । ସମ୍ପ୍ରତି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ତାଙ୍କର ଗଳ୍ପ ପୁସ୍ତକ "କେତୋଟି କଥା"ର ବହୁ ଗଳ୍ପ ଅନ୍ୟାନ୍ୟ ଭାଷାରେ ଅନୂଦିତ ହୋଇ ପ୍ରଶଂସା ଲାଭ କରିଛନ୍ତି । ନମନୀୟ ଭଦ୍ରତା, ସୁକୋମଳ ଦୃଷ୍ଟିଭଙ୍ଗୀ, ବାକ୍ୟମାନଙ୍କର ସଂଯତ ଚିନ୍ତାବାହକତା, ତାଙ୍କ ରଚନା ଶୈଳୀର ବିଶେଷତା ।

## ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର

୧୯୩୩ରେ ବ୍ରହ୍ମପୁର ସହରରେ ଜନ୍ମ । ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ଉପ ପ୍ରାଧ୍ୟାପକ । 'ମୌନାବଣ୍ଟ ଗ୍ରନ୍ଥି', 'ହୀତଦାସୀର କାବ୍ୟ', 'ନାଏଗ୍ରା ଓ ଦେବଯାନୀ', 'ଅରଣ୍ୟ ଓ ଉପବନ' "ଭୃଗୁସଂହିତା" ଓ "ନିଜକୁ ନାୟକ କର" ଏହାଙ୍କର ପ୍ରସିଦ୍ଧ ଗଳ୍ପ ସଞ୍ଚୟନ । ମନସ୍ତାତ୍ତ୍ୱିକ ଗଳ୍ପରୁ ଲେଖା ଆରମ୍ଭ କରିଥିଲେ ।

ପରବର୍ତ୍ତୀକାଳରେ, ସହାନୁଭୂତିମୂଳକ ସମାଜ ଚେତନାନିଷ୍ଠ, ଗଳ୍ପ ଲେଖି ସେ ସୁନାମ ଅର୍ଜ୍ଜନ କରିଛନ୍ତି । ତାଙ୍କର ସାମ୍ପ୍ରତିକ ବହୁ ଗଳ୍ପ, ଆମେରିକା, କାନାଡ଼ା ପୃଷ୍ଠଭୂମିରେ ଲେଖାହୋଇ, ଭାରତୀୟ ଓ ବିଦେଶୀ ଚରିତ୍ର ମିଳନରେ ସୃଷ୍ଟି, ପ୍ରେମ, ମାନସିକ ଆବେଗ, ଘାତ ପ୍ରତିଘାତ ଓ ଯନ୍ତ୍ରଣାଦିକୁ ଚିତ୍ରଣ କରିଛି । ଶିଳ୍ପକଳ୍ପ ପ୍ରୟୋଗ, ତାତ୍ତ୍ୱିକ ଦୃଷ୍ଟିକୋଣ, ଚିରନ୍ତନ ମୂଲ୍ୟବୋଧ ପ୍ରତି ସଚେତନତା ଓ ଏକାନ୍ତ ଆନ୍ତରିକତା ତାଙ୍କ ଶିଳ୍ପଗୁଡ଼ିକର ବିଶେଷତା ।

## ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ

୧୯୩୩ ରେ କଟକର ସିଦ୍ଧେଶ୍ୱରପୁରରେ ଜନ୍ମ । 'ଦୁଦ୍ୱାର', 'ଏଇ ଶେଷ ପଦଟି' ତାଙ୍କର ଦୁଇଟି ପ୍ରସିଦ୍ଧ କ୍ଷୁଦ୍ରଗଳ୍ପ ସଂଗ୍ରହ । ପ୍ରଥମ ଗଳ୍ପଗୁଡ଼ିକରେ କଥିତ ପ୍ରଗଳ୍ଭତା ଦେଖାଯାଇଥିଲେ ମଧ୍ୟ ପରବର୍ତ୍ତୀ ଗଳ୍ପଗୁଡ଼ିକରେ ଶିଳ୍ପକଳ୍ପର ସାର୍ଥକ ପ୍ରୟୋଗ, ଅଳ୍ପରେ ବହୁକଥା କହି ପାରିବାର ଶକ୍ତି ତାଙ୍କୁ ଯଶସ୍ୱୀ କରାଇ ପାରିଛି । ଗଳ୍ପ ଲେଖାରେ ଆନ୍ତରିକତା ଓ ପ୍ରଶ୍ନାତ୍ମକ ଗମ୍ଭୀରତା ତାଙ୍କ ଗଳ୍ପଗୁଡ଼ିକୁ ଆପେକ୍ଷିକ ଗୁରୁତ୍ୱ ଦିଏ । ଓଡ଼ିଆ ସାହିତ୍ୟ ଏକାଡ଼େମୀଦ୍ୱାରା ପୁରସ୍କୃତ ହୋଇଛନ୍ତି ।

## ଶ୍ରୀ ହରିହର ଦାସ

୧୯୩୮ ରେ ଆସିକାରେ ଜନ୍ମ । ବର୍ତ୍ତମାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନରେ ଉପ-ପ୍ରାଧ୍ୟାପକ । 'କ୍ରାନ୍ତିକାରୀ ଜୀବନରେ ଉପକଥା'' ତାଙ୍କର କ୍ଷୁଦ୍ରଗଳ୍ପ ସଞ୍ଚୟନ । ସମାଜର ଅବହେଳିତ ସମ୍ପ୍ରଦାୟ ବା ଗୁରୁତ୍ୱପୂର୍ଣ୍ଣ କିନ୍ତୁ ଅବହେଳିତ ମୂଲ୍ୟଗୁଡ଼ିକ ପ୍ରତି ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିବା ତାଙ୍କର ଅନେକ ଗପର ବିଷୟଗତ ବିଶେଷତା । ପ୍ରାୟ ନିରାଡ଼ମ୍ବର ଭାଷା । ଶୈଳୀରେ ପରୀକ୍ଷା ନିରୀକ୍ଷାର ଅଭାବ ପ୍ରଧାନ ଦୁର୍ବଳତା ।